କାର୍ତ୍ତିକେଶ୍ୱର ପାତ୍ର



# ଇତିହାସର ଛାଇ

ଲେଖକ
ଶ୍ରୀ କାର୍ତ୍ତିକେଶ୍ୱର ପାଣ୍ଡ, ଏମ୍ ଏ.,

ପ୍ରକାଶକ
ଶ୍ରୀ ବନ୍ଧୁଚରଣ ଦାଶ
କଥାପିଠାଲ ଷ୍ଟୁଡେଣ୍ଟସ୍ ଷ୍ଟୋର
୧୪୫ ଅଶୋକନଗର
ଭୁବନେଶ୍ୱର

# ଇତିହାସର ଛାଇ

ଲେଖକ—ଶ୍ରୀ କାର୍ତ୍ତିକେଶ୍ୱର ପାଣ୍ଡ ଏମ୍. ଏ.,

ପ୍ରକାଶକ

ଶ୍ରୀ ବପ୍ରଚରଣ ଦାଶ

କ୍ୟାପିଟାଲ୍ ଷ୍ଟୁଡେଣ୍ଟସ୍ ଷ୍ଟୋର

ଭୁବନେଶ୍ୱର

ପ୍ରଥମ ସଂସ୍କରଣ

୧୯୮୧

ମୁଦ୍ରକ

ବ୍ରଜେନ୍ଦ୍ର ପ୍ରେସ୍

ନାଜବଜାର, କଟକ-୧

ମୂଲ୍ୟ—୬-୫୦

# ଉତ୍ସର୍ଗ

ନାରୀ ଶକ୍ତିର ଉତ୍ସ । ଜୀବନ ଯନ୍ତ୍ରଣାର ପୃଷ୍ଠଭୂମିରେ ଜାୟା, ଜନନୀ ଓ ଭଗିନୀ ରୂପରେ ଦଣ୍ଡାୟମାନା । ହସ କାନ୍ଦର ଦୁନିଆରେ ନାରୀ ଅପରିହାର୍ଯ୍ୟ ସହଯାତ୍ରିଣୀ ।

ଏ 'ଇତିହାସର ଲୁହ' ଯାହାର ପ୍ରେରଣା, ଯାହାର ଅକୁଣ୍ଠିତ ସାହାଯ୍ୟରେ ପାଣ୍ଡୁଲିପିରୁ ବହି ଆକାରରେ ଆତ୍ମ ଲାଭ କରିବାର ସୁଯୋଗ ଲାଭ କରିଛି, ଜୀବନର କଣ୍ଟକିତ ପଥର ସହଯାତ୍ରିଣୀ ଶ୍ରୀମତୀ ଉମାରାଣୀଙ୍କ ହାତରେ ସେହି ପୁରୁଷର ପ୍ରେରଣାର ଉତ୍ସ ବିଷୟବସ୍ତୁ ସମ୍ବଳିତ 'ଇତିହାସର ଲୁହ'ଟିକୁ ଉତ୍ସର୍ଗ କରି ନିଶ୍ଚିନ୍ତ ରହୁଛି ।

ବିନୀତ

**ଲେଖକ**

# ଅଭିମତ

ଶ୍ରୀମାନ୍ କାର୍ତ୍ତିକେଶ୍ୱର ପାତ୍ର ଇତିମଧ୍ୟରେ ସାହିତ୍ୟ କ୍ଷେତ୍ରରେ ଯେଉଁ ସାଧନା ଚଳାଇଛନ୍ତି ସେଥିପାଇଁ ତାଙ୍କୁ ଅନ୍ତରର ଧନ୍ୟବାଦ ଜଣାଉଛି । ସେ ରାଜନୀତିରେ ଆଗ୍ରହୀ ଥିଲେ ମଧ୍ୟ ସାହିତ୍ୟ ପ୍ରତି ତାଙ୍କର ଆଦର ଓ ଆଗ୍ରହ କିଛି କମ୍ ନୁହେଁ । ତାଙ୍କଦ୍ୱାରା ଲିଖିତ "ସିପାହୀ" "ବିଷତୃଷ୍ଣା" ଓ "କାରୁବାକୀ" ନାମରେ ତିନୋଟି ନାଟକ ପ୍ରକାଶିତ ହୋଇଛି ଏବଂ ସଫଳତାର ସହିତ ମଞ୍ଚସ୍ଥ ହୋଇଛି । ବର୍ତ୍ତମାନ ତାଙ୍କ ଲିଖିତ "ଇତିହାସର ଭୁଲ" ନାମକ ନାଟକ ସଫଳତାର ସହିତ ମଞ୍ଚସ୍ଥ ହୋଇ ଆସିଛି । ଏ ନାଟକ ଐତିହାସିକ ବିଷୟ ଆଶ୍ରୟରେ ଲିଖିତ ।

ସାହିତ୍ୟରେ ନାଟକର ଏକ ପ୍ରଧାନ ସ୍ଥାନ ଅଛି । ଓଡ଼ିଆ ସାହିତ୍ୟରେ ନାଟକ ଲେଖାର ଭୂମିକା ମଧ୍ୟ ଗୌଣ ନୁହେଁ । ଦୁଃଖର ବିଷୟ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଯେଉଁ ସାହିତ୍ୟିକ ପ୍ରଚେଷ୍ଟା ଚାଲିଛି ସେସବୁ ସହିତ ଅବହିତ ନ ହୋଇ କେତେକ ପଲ୍ଲବଗ୍ରାହୀ ଗବେଷକ ଅଳ୍ପ କେତୋଟି ଅଞ୍ଚଳର ବିବରଣୀ ଉପରେ ନିର୍ଭର କରି ସମୀକ୍ଷାମାନ ସାଧାରଣ ଭାବରେ ପ୍ରକାଶ କରୁଛନ୍ତି । ଏତଦ୍ଦ୍ୱାରା ସମଗ୍ର ଓଡ଼ିଆ ସାହିତ୍ୟର ଚିତ୍ର ଅନ୍ୟ ପ୍ରାଦେଶିକ ଭାଷାଭାଷୀମାନଙ୍କ ସମ୍ମୁଖରେ ଉପସ୍ଥାପିତ ହୋଇପାରୁନାହିଁ । ଶ୍ରୀମାନ୍ କାର୍ତ୍ତିକେଶ୍ୱର ବାଲେଶ୍ୱର ଜିଲ୍ଲାର ଯେଉଁ ଅଞ୍ଚଳର ବ୍ୟକ୍ତି ସେ ଅଞ୍ଚଳରେ ସାହିତ୍ୟର ଯେଉଁ ପରମ୍ପରା ଅଛି ତାହା ବହୁ ତଥାକଥିତ ଲେଖକ ଜାଣି ନ ଥିବେ । ଆଶା କରାଯାଏ ଓଡ଼ିଶାରେ ଏକ ସାହିତ୍ୟ କେନ୍ଦ୍ରର ଅଭାବ ଶୀଘ୍ର ଦୂରୀଭୂତ ହେବ ।

ଶ୍ରୀ କାର୍ତ୍ତିକେଶ୍ୱରଙ୍କୁ ଧନ୍ୟବାଦ୍ ଜ୍ଞାପନ କରୁଛି ଏବଂ ତାଙ୍କର ଉତ୍ତରୋତ୍ତର ଉନ୍ନତି ପାଇଁ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଛି ।

ହରେକୃଷ୍ଣ ମହତାବ

# ପଦେ ଅଧେ

'ଇତିହାସର ସ୍ରଷ୍ଟା' କିନ୍ତୁ ସ୍ରଷ୍ଟାଇର ଇତିହାସ ନୁହେଁ କିମ୍ବା ଇତିହାସର ବଟବୃକ୍ଷ ତଳେ ଏକାନ୍ତ ନିଃଶ୍ରସ୍ତ ଭାବରେ ବଢ଼ି ଉଠୁଥିବା କୌଣସି ଅବହେଳିତ ଦୂର୍ବାର ଇତିହାସ ନୁହେଁ । ବରଂ ଇତିହାସର ମେଘନାଦ ପାଚେରୀ ଡେଇଁ କୌଣସି ଏକ ଦୁଃସାହସୀ ଚରିତ୍ରର କରୁଣ ସଂଳାପ, ନାଟକରେ । ତେଣୁ ଇତିହାସ ଏଠି ଆଶ୍ରିତ । ଏ ନାଟକ ଐତିହାସିକ ହୋଇପାରେ କିନ୍ତୁ ଇତିହାସ ନୁହେଁ । ଯେପରି ଐତିହାସିକ ସତ୍ୟତା ନାଟକୀୟ ସତ୍ୟତା ହୋଇ ପାରେନା । ଏ ନାଟକ ମୁଁ ଦେଖିଛି ପେଶାଦାର ରଙ୍ଗମଞ୍ଚରେ । ନାଟ୍ୟକାରଙ୍କୁ ଭେଟିଛି ଘଟଣାବହୁଳ ଜୀବନର ରାଜପଥ ଉପରେ ବାରଂବାର, ବିଭିନ୍ନ ଉପଲକ୍ଷ୍ୟରେ । ସେପର୍ଯ୍ୟନ୍ତ 'କାରୁବାକୀ'ର ଜୀବନଯନ୍ତ୍ରଣା ନାଟ୍ୟକାରଙ୍କୁ ଅଭିଭୂତ କରି ନ ଥିଲା । ଖାଲି ରହିଯାଇଥିଲା ସ୍ମୃତି ପରି, ଅବିସ୍ମୃତ, ଅବିଚ୍ଛେଦ୍ୟ ସ୍ରଷ୍ଟା ପରି—'ଇତିହାସର ସ୍ରଷ୍ଟା' । ତେଣୁ ଚର୍ଚ୍ଚାରେ, ଆଲୋଚନାରେ ବାରମ୍ବାର ଆସୁଥିଲା, ସେଇ ଗୋଟିଏ ନାଟକର ସମ୍ପର୍କ—'ଇତିହାସର ସ୍ରଷ୍ଟା' । ଯାହା ଇତିହାସକୁ ଅତିକ୍ରମ କରି, ଐତିହାସିକ ସତ୍ତାକୁ ଅତିକ୍ରମ କରି, ନାଟକ ଏବଂ ନାଟକୀୟ ସତ୍ୟର କଣ୍ଠଦାଣ୍ଡରେ ନିଜର ସମସ୍ତ ଉଜ୍ଜ୍ୱଳତାର ଅଧିକାରକୁ ନେଇ ନାୟକ ରୂପରେ ଦଣ୍ଡାୟମାନ ।

ଆଜି ପୁଣି ତା'ର ନବକଳେବର । ଆଜି ସେ ପାଦପ୍ରଦୀପ ସମ୍ମୁଖରେ ଏକାକୀ ଯୁଦ୍ଧରତ ନୁହେଁ । ଏକାକୀ ପଦାତିକ ନୁହେଁ । ଆଜି ସେ ଖାଲି ପାଦପ୍ରଦୀପ ସମ୍ମୁଖରେ ନୁହେଁ, ଜଗତର ଦରବାରରେ ଦଣ୍ଡାୟମାନ ।

କାର୍ତ୍ତିକବାବୁଙ୍କର ପ୍ରଚେଷ୍ଟା ଫଳବତୀ ହେଉ । ପ୍ରୟାସ ଶୁଭଙ୍କର ହେଉ ।

**ବିଜୟ ମିଶ୍ର**

ନାଟ୍ୟକାର ଶ୍ରୀ କାର୍ତ୍ତିକେଶ୍ୱର ପାଢ଼ ଝୋରଗଡ଼ ଥାନାଅନ୍ତର୍ଗତ ସୁନ୍ଦରଗଡ଼ ଗ୍ରାମରେ ଜନ୍ମଲାଭ କରିଛନ୍ତି । ପିତା ଶ୍ରୀ ଭଗବାନ ଚନ୍ଦ୍ର ପାଢ଼ ଜଣେ ମଧ୍ୟବିତ୍ତ କୃଷକ । ପିଲାଟିକାଳରୁ ଶ୍ରୀ ପାଢ଼ ସାହିତ୍ୟ ସାଧନା ପ୍ରତି ଆକୃଷ୍ଟ । ଛାତ୍ରଜୀବନରେ କବିତା ଲେଖିବାରେ ଥିଲା ତାଙ୍କର ଅସୀମ ଆଗ୍ରହ । ମାଆ କ୍ଷୀରୋଦାମଣିଙ୍କ ପାଇଁ ଶ୍ରୀ ପାଢ଼ କଲେଜ ଜୀବନ ପରେ କବିତା ଲେଖା ଛାଡ଼ି ନାଟକ ଲେଖିବା ଆରମ୍ଭ କରନ୍ତି । ସିପାହୀ, ବକ୍ଷତୃଷ୍ଣା, କାରୁବାକା, ଇତିହାସର ଛାଇ, ରେଡ଼ିଓ ନାଟକ କାଳର ହୁତାଶନ ଓ ଅପ୍ରକାଶିତ କେତେକ ନାଟକର ଲେଖକ ଶ୍ରୀ ପାଢ଼ ଜଣେ ସୁଦକ୍ଷ ବୈଧାନିକ ହିସାବରେ ଓଡ଼ିଶାରେ ପରିଚିତ । ରାଜନୈତିକ ଜୀବନକୁ ପାଥେୟ କରି ଶ୍ରୀ ପାଢ଼ ସାହିତ୍ୟ ସାଧନାରେ ଏବେ ମଧ୍ୟ ନିଜକୁ ନିୟୋଜିତ କରି ଚାଲିଥିବା ସୁଖର କଥା । ପ୍ରକାଶକ ହିସାବରେ ଏ ନାଟକର ଦୋଷ ତ୍ରୁଟି ପାଇଁ ମୁଁ ଦାୟୀ ଓ ସେଥିପାଇଁ ସୁଧୀ ପାଠକମାନଙ୍କଠାରୁ କ୍ଷମା ପ୍ରାର୍ଥି ରହୁଛି ।

ବିନୀତ

ପ୍ରକାଶକ

# ନିଜ କଥା

କଥା ଓ କାହାଣୀର ବିଷୟବସ୍ତୁକୁ ନାଟକରେ ଜୀବନ୍ତ ରୂପ ଦେବାର ଲେଖ ସମ୍ଭାଳ ପାରିଲି ନାହିଁ । ଲେଖକ ଶ୍ରୀଯୁକ୍ତ ଯଜ୍ଞାନ୍ଧ୍ର ମହାପାତ୍ରଙ୍କର 'ବନ୍ଧବନ୍ୟା' ଉପନ୍ୟାସର ବିଷୟବସ୍ତୁକୁ ନେଇ 'ଇତିହାସର ଗୁଜ' ରଚିତ । ଏଥିପାଇଁ ଶ୍ରୀଯୁକ୍ତ ମହାପାତ୍ରଙ୍କ ଠାରେ ମୁଁ ସର୍ବପ୍ରଥମ ଋଣୀ । ଶ୍ୟାମସୁନ୍ଦର କ୍ଲବ, ଖେଳଗାଈ ଓ ପରେ ପରେ ଅନ୍ନପୂର୍ଣ୍ଣା ଏ' ଗ୍ରୁପ ଏହି ନାଟକକୁ ରୂପାୟିତ କରି ଲୋକ-ଲୋଚନକୁ ଆଣିବାରେ ଅକଥନୀୟ ଉଦ୍ୟମ କରିଥିବାରୁ ସେମାନଙ୍କ ଠାରେ ଚିର କୃତଜ୍ଞ ।

ଜୀବନ ସଂଗ୍ରାମମୟ । ସଂଗ୍ରାମମୟୀ ଜୀବନର ପ୍ରତିଚ୍ଛବି ହିଁ ନାଟକ । ସଂଘର୍ଷ ବା conflict କୁ ବାଦ ଦେଲେ ନାଟକ ଗତିହୀନ, ଛନ୍ଦହୀନ । ଅନ୍ତିମ ହିଁ ନାଟକର ପରିଣତି । ପରିଣତି ହିଁ ନାଟକର ଚରମ ଆକର୍ଷଣ । ବିୟୋଗାନ୍ତ ନାଟକର ପରିଣତି ଦର୍ଶକ ମନରେ ଭାବାବେଶ ସୃଷ୍ଟି କରିଥାଏ । ଏହି ଭାବାବେଶ କ୍ଷଣସ୍ଥାୟୀ ବା ଦୀର୍ଘସ୍ଥାୟୀ ହେବା ନାଟକର ସଫଳତା ଉପରେ ନିର୍ଭର କରେ । ମିଳନାତ୍ମକ ନାଟକ ସାମୟିକ ଭାବରେ ଆନନ୍ଦ ସୃଷ୍ଟି କଲେ ମଧ୍ୟ ତା'ର ପ୍ରଭାବ କ୍ଷଣସ୍ଥାୟୀ । 'ଇତିହାସର ଗୁଜ' ଏକ ବିୟୋଗାତ୍ମକ ନାଟକ । ପ୍ରାରମ୍ଭରୁ ନାରୀ ପ୍ରେରଣାର ଉତ୍ସ ହିସାବରେ ଦଣ୍ଡାୟମାନା । ପ୍ରେରଣା ନ ଥାଇ ବିକାଶ ଅସମ୍ଭବ ।

ଭୁଲ-ବୁଝାମଣା ପ୍ରୀତିପଥର ପ୍ରାଚୀର । ଅପରକୁ ବୁଝିବାର ଚେଷ୍ଟା ବ୍ୟତିରେକେ ଜୀବନର ସୁଖ, ଶାନ୍ତି ଓ ସମୃଦ୍ଧି ନିଷ୍ଫଳ । ଭୁଲ ବୁଝାମଣା ସମସ୍ତ ଅଶାନ୍ତି ଓ ଅସନ୍ତୋଷର କାରଣ । ପାଇବା

ବା ହରାଇବା ଅସ୍ଥିରତାର ପରିବୃସ୍ତକ । ହସ କାନ୍ଦ ଓ ରାଗ ରୋଷ, ମାନ ଅଭିମାନ ଓ ଗର୍ବ ଦମ୍ଭ ଜୀବନର ଛନ୍ଦ । ନାଟକ ଜୀବନ ଛନ୍ଦର ପ୍ରତିଧ୍ୱନି । 'ଇତିହାସର ଲୁହ' କେତେଦୂର ଏହାକୁ ବହନ କରିବାରେ ସମର୍ଥ ସୁଧୀ ପାଠକବୃନ୍ଦ ବିଚାର କରିବେ ।

ଯେଉଁମାନଙ୍କର ଅପରିଶୋଧ ସାହାଯ୍ୟ ଓ ସହାନୁଭୂତି ନେଇ 'ଇତିହାସର ଲୁହ' ମୁଣ୍ଡ ଟେକିଛି ସେମାନଙ୍କ ମଧ୍ୟରେ ଡକ୍ଟର ବିଷ୍ଣୁ ଚରଣ ରାଉତ, ପ୍ରକାଶକ ବିପ୍ରଚରଣ ଦାଶ, ଡକ୍ଟର ପଞ୍ଚାନନ ଜେନା, ପ୍ରସନ୍ନକୁମାର ଦାସ, ଅସୀମ ଦା, ପ୍ରଖ୍ୟାତ ନାଟ୍ୟକାର ବନ୍ଧୁ ଶ୍ରୀ ବିଜୟକୁମାର ମିଶ୍ର, ସୁବଳବାବୁ, ବଳରାମ, ହେମ, ମୃତ୍ୟୁଞ୍ଜୟ, ଅଚ୍ୟୁତ, ରବି, ମନ୍ମଥ ଓ ଜଗନ୍ନାଥ ଏବଂ ଆହୁରି ଅନେକ ବନ୍ଧୁ ଅନ୍ୟତମ ।

ଓଡ଼ିଆ ସାହିତ୍ୟ ଜଗତର ଦ୍ୱାରପାଳ ଡକ୍ଟର ହରେକୃଷ୍ଣ ମହତାବଙ୍କ ସ୍ନେହ ଓ ସହାନଭୂତି ଭୁଲିବାର ନୁହେଁ । 'କାର୍ତ୍ତିକେଶ୍ୱର ଏ ରାଜନୀତି ଧନ୍ଦା ଛାଡ଼ି ସାହିତ୍ୟ ସାଧନା କର । ଏଥିରେ ଆନନ୍ଦ ଅଛି' ଏହି ଉପଦେଶ ଏବେ ବି ମୋ ଅନ୍ତରରେ ପ୍ରତିଧ୍ୱନିତ ।

ଶ୍ରେଷ୍ଠ ବଡ଼ ସମସ୍ତଙ୍କଠାରେ ସମାନଭାବରେ ମୁଁ କୃତଜ୍ଞ ।

ପରିଶେଷରେ ସୁଧୀ ଦର୍ଶକ ଓ ପାଠକମାନଙ୍କୁ ପୁଣି ଥରେ ଅଭିନନ୍ଦନ ଜଣାଇ ରହୁଛି ।

ବିନୀତ

**ଲେଖକ**

'ଇତିହାସର ଛାଇ' ଅନ୍ନପୂର୍ଣ୍ଣା ଏ ଗ୍ରୁପ ପୁରୀଙ୍କ ଦ୍ୱାରା ବହୁ ପ୍ରଶଂସାର ସହ ଅଭିନୀତ ।

ପ୍ରାରମ୍ଭ ରଜନୀ—ତା ୨୪।୯।୭୬ ରିଖ ସନ୍ଧ୍ୟା ୬ ଟା

ସ୍ଥାନ—ଅନ୍ନପୂର୍ଣ୍ଣା ସ୍ଥାୟୀ ରଙ୍ଗମଞ୍ଚ, ପୁରୀ

ଉଦ୍‌ଘାଟକ—**ଶ୍ରୀ ଗଙ୍ଗାଧର ମହାପାତ୍ର,**
ଓଡ଼ିଶାର ସାଂସ୍କୃତିକ ବ୍ୟାପାର ବିଭାଗ ମନ୍ତ୍ରୀ

ମୁଖ୍ୟ ଅତିଥି —**ଶ୍ରୀ ଲକ୍ଷ୍ମଣ ଚନ୍ଦ୍ର ମଲ୍ଲିକ,**
ଓଡ଼ିଶାର ପୂର୍ତ୍ତ, ପରିବହନ, କୃଷି ଓ ସମବାୟ ମନ୍ତ୍ରୀ ।

ମୁଖ୍ୟ ବକ୍ତା—**ଶ୍ରୀ ଶୈଲେନ୍ ମହାପାତ୍ର**, ମୁଖ୍ୟ ସଚେତକ

ପରିଚାଳନା ବିଭାଗ—ପ୍ରତିଷ୍ଠାତା ୰ **ସୋମନାଥ ଦାଶ** ।

ସତ୍ତ୍ୱାଧିକାରୀ—**କୃଷ୍ଣମୋହନ ରଥ** ।

ଜେନେରାଲ ମ୍ୟାନେଜର—୰ **ମଞ୍ଜୁଶ୍ରୀ ବାଉରୀବନ୍ଧୁ ମହାନ୍ତି** ।

ମ୍ୟାନେଜର—**ଶ୍ରୀ ଦାଲୁକେଶ୍ୱର ରଥ** ।

ମଞ୍ଚର ଅନ୍ତରାଳେ—

ଗୀତରଚନା—ଶ୍ରୀ **ପୂର୍ଣ୍ଣଚନ୍ଦ୍ର କାନୁନଗୋ** ।
ଶ୍ରୀ ବ୍ୟୋମକେଶ ତ୍ରିପାଠୀ ।

ସଙ୍ଗୀତ ପରିଚାଳନା—ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ର ।

ଆବାଦ୍ୱ ସଙ୍ଗୀତ—ଶ୍ରୀ ଲକ୍ଷ୍ମୀପ୍ରିୟା ମିଶ୍ର ।

କ୍ଲାରିଓନେଟ୍ ଓ ଫ୍ଲୁଟ—ଶ୍ରୀ ଦୟାନିଧି ତ୍ରିପାଠୀ ।

ନୃତ୍ୟ ପରିଚାଳନା—ପି. ଭି. ଏସ୍. ବିମାରାଓ ।

ମଞ୍ଚ ଶିଳ୍ପୀ—ନାରାୟଣ ।

ମଞ୍ଚ ପରିଚାଳକ—ନିରଞ୍ଜନ, ବାଇଲ, ବିପିନ, ଝିରିଆ ।

ଆଲୋକ—ରାଜକିଶୋର, ଧନେଶ୍ୱର, ଲଳିତ ।

ବେଶ ବିନ୍ୟାସ—ଲିଙ୍ଗରାଜ ।

ସ୍ମାରକ—ଲକ୍ଷ୍ମୀଧର, କମଳ

ସର୍ବୋପଦେଷ୍ଟା—ଶ୍ରୀ ବ୍ୟୋମକେଶ ତ୍ରିପାଠୀ, ଶ୍ରୀ ଦୁଃଖୀରାମ ସ୍ୱାଇଁ
ଶ୍ରୀ ଲକ୍ଷ୍ମୀନାରାୟଣ ପାଢ଼ୀ

ନିର୍ଦ୍ଦେଶନା—ଶ୍ରୀ ଦୁର୍ଲ୍ଲଭ ଚନ୍ଦ୍ର ସିଂ

ନାଟ୍ୟକାର—ଶ୍ରୀ କାର୍ତ୍ତିକେଶ୍ୱର ପାଢ଼ୀ ଏମ୍., ଏଲ୍. ଏ,
ଓଡ଼ିଶା ବିଧାନ ସଭା ।

## ଶିଳ୍ପୀଗଣ

ପୁରୁଷ—ଯଶୱନ୍ତ—ଇତିହାସ ଅଧ୍ୟାପକ—ଦୁର୍ଲଭ ଚନ୍ଦ୍ର ସିଂ
କାର୍ତ୍ତିକ—ଗୁଣ୍ଡ—କୃଷ୍ଣଚନ୍ଦ୍ର ପଣ୍ଡା
ସିରାଜ ଉଦ୍ଦୌଲା—ରଘୁନାଥ ମିଶ୍ର
ଶତ୍ରୁଶଲ୍ୟ—ଦୁଃଖୀରାମ ସ୍ୱାଇଁ
ଲଲାଟେନ୍ଦୁ—ଶ୍ରୀ ମିଶ୍ର
ଭାସ୍କର ପଣ୍ଡିତ—ରାମଚନ୍ଦ୍ର ପ୍ରତିହାରୀ
ଶମ୍ଭୁରାଉ—କମଳଲୋଚନ ଦାଶ
ଶୁଭଦେବ—ରବିନାରାୟଣ ଦାଶ
ଅମର—ଭରତ ସେଠୀ
ଜହରତ୍ ଖାଁ—ଅନାମ ସେଠୀ
ଇମାମ୍ ଅଲ୍ଲି—ଘନଶ୍ୟାମ ମିଶ୍ର
ସଲାବତ୍ ଖାଁ—ଲକ୍ଷ୍ମୀଧର ମଲ୍ଲିକ
ରହେମତ୍ ଖାଁ—ଶିବ ମହାନ୍ତି
ଆତ୍ମାରାମ—ଝାଡ଼େଶ୍ୱର ଜେନା

ସ୍ତ୍ରୀ—ତନୟା—କୁଞ୍ଜଲତା ଦାସ
ସୁଭଦ୍ରା—ନର୍ମଦା ଦେବୀ
ଆଲେଖ୍ୟା—ଲକ୍ଷ୍ମୀପ୍ରିୟା ମିଶ୍ର
ମୁକ୍ତକେଶୀ—ଶାନ୍ତିଲତା ମହାନ୍ତି

ନୃତ୍ୟରେ—ସୁମିତ୍ରା, ଅନ୍ନପୂର୍ଣ୍ଣା, ରମା, ପ୍ରମିଳା
(ଖ) ଶାନ୍ତି, ଲକ୍ଷ୍ମୀ ।

## ପ୍ରସ୍ତାବନା—

[ ଦୃଶ୍ୟ ଉନ୍ମୋଚନ ହେଲା ବେଳକୁ
ଝଡ଼ ବର୍ଷାର ଶବ୍ଦ —ପାହାଡ଼
ଖୋଲରେ ଆଶ୍ରୟ ନେଇଛନ୍ତି
ଯଶୋଚନ୍ଦ୍ର ବାବୁ ଓ କାର୍ତ୍ତିକ । ]

କାର୍ତ୍ତିକ— ଉଃ, କି ଦୁର୍ଯୋଗ ! ଏ ଝଡ଼ବର୍ଷା ଶୀଘ୍ର ଛାଡ଼ିଲାଭଳି ମନେ ହେଉନି ସାର୍ ଘରକୁ ଫେରିବା କେମିତି ?

ଯଶୋଚନ୍ଦ୍ର—କେଜାଣି । ହୁଏତ ଏଇ ପାହାଡ଼ ଗୁମ୍ଫା ଆଜି ରାତିକ ପାଇଁ ଆମର ଆଶ୍ରୟସ୍ଥଳ ହୋଇପାରେ ।

କାର୍ତ୍ତିକ—ଏଇ ଗୁମ୍ଫାଟାରେ—ଝଡ଼ ବର୍ଷା ଅନ୍ଧାର ରାତିଟାରେ—

ଯଶୋଚନ୍ଦ୍ର—ହଁ, ତୁମେ ଭୟ କରୁଛନା କ'ଣ ? ଇତିହାସର ଛାତ୍ର ତୁମେ, ତୁମର ଇତିହାସ ତ ଏହିପରି ବଣ, ପାହାଡ଼, ଗୁମ୍ଫା ଭିତରେ ଲୁଚି ରହିଛି । ଏହିସବୁ ସ୍ଥାନ ଇତିହାସର ପ୍ରକୃତ ଗବେଷଣା କ୍ଷେତ୍ର । ଏହିପରି ସ୍ଥାନମାନଙ୍କରେ ନିଜକୁ ମିଶାଇ ଦେଇ ନ ପାରିଲେ, ବିଗତ ଜନର ସୁଖ, ଦୁଃଖ, ହସକାନ୍ଦଭରା ଆମ ପୂର୍ବପୁରୁଷ ମାନଙ୍କର ଇତିହାସ ତୁମେ ଲୋକଲୋଚନକୁ ଆଣିବ କିପରି ?

କାର୍ତ୍ତିକ—କିନ୍ତୁ ସାର୍, ଇତିହାସର ଗବେଷଣା କରିବାକୁ ଆସି ଏଠି ଏମିତି—(ହଠାତ୍ ନାରୀ କଣ୍ଠର ସଙ୍ଗୀତ ଭିତରୁ ଶୁଣାଗଲା) ଏଠି ତ ପାଖରେ ଗାଁ ଗଣ୍ଡା କିଛି ନାହିଁ ସାର୍ ! ଏଇ ଅନ୍ଧାର ଝଡ଼ ବର୍ଷା ରାତିଟାରେ ସ୍ତ୍ରୀ ଲୋକଟିଏ କିଏ ଗୀତ ଗାଉଛି ?

ଯଶୋଚନ୍ଦ୍ର—( ହସି ) ଏଇ ତ ଇତିହାସ ।

କାର୍ତ୍ତିକ—ମାନେ ?

ପଣ୍ଡାନ୍—ମୁଁ ତୁମକୁ କହୁଥିଲି । ପ୍ରଥମଥର ପାଇଁ ମୁଁ ଯେତେବେଳେ ଏଠାକୁ ବୁଲି ଆସେଁ - ମୁଁ ମଧ୍ୟ ତୁମଭ ପରି ଚମକି ଉଠିଥିଲି । କିନ୍ତୁ, ପରେ ଏଠାକାର ସ୍ଥାନୀୟ ଅଧିବାସୀଙ୍କଠାରୁ ବୁଝି ଏଠାକାର ଇତିହାସ ସଂଗ୍ରହ କରି ଜାଣିଲି ଯେ, ଏ ସ୍ଥାନଟି କି ଚମକପ୍ରଦ ଘଟଣାର ପୃଷ୍ଠଭୂମି ଥିଲା । ( ଗୋଟିଏ ଅସ୍ପଷ୍ଟ ଛାୟାମୂର୍ତ୍ତି ଆଗେଇ ଆସିଲା । )

କାର୍ତ୍ତିକ—ଦେଖନ୍ତୁ ସାର, (କ୍ରମେ ପୂର୍ବର କରୁଣ ସଙ୍ଗୀତ ଦୂରରୁ ନିକଟତର ହୋଇ ହଠାତ୍ ବନ୍ଦ ହୋଇଗଲା । କେତୋଟି ମୁହୂର୍ତ୍ତ ନୀରବତା ପରେ ହଠାତ୍ ଶୁଣାଗଲା ନାରୀକଣ୍ଠର ଉଚ୍ଚକିତ ହସ । ସଙ୍ଗେ ସଙ୍ଗେ ସ୍ୱର ଓ ଛାୟାମୂର୍ତ୍ତି ଦୁହେଁ ଅଦୃଶ୍ୟ ହେଲେ ) ଏ କିଏ ସାର୍ ?

ପଣ୍ଡାନ୍—ଇଏ ତନୟା । ଗୋଟିଏ ପାଇକ ଝିଅ । ଅତୁଳନୀୟ ତାର ସୌନ୍ଦର୍ଯ୍ୟ । ବଙ୍ଗ-ବିହାର-ଓଡ଼ିଶାର ନବାବ ସିରାଜ ଉଦ୍ଦୌଲା ଯାହାଲାଗି ଅସ୍ଥିର ହୋଇ ଉଠିଥିଲେ ।

କାର୍ତ୍ତିକ—ତେବେ କଣ ସାର୍ ଏ ଛାୟାମୂର୍ତ୍ତିଟି ସିରାଜଉଦ୍ଦୌଲା ?

ପଣ୍ଡାନ୍—ଇତିହାସର ଛାତ୍ର । ତୁମେ ଇତିହାସ ଗବେଷଣା କରିବାକୁ ଆସିଚ ନା ? (ହଠାତ୍ ଗୋଟିଏ ଜାଗାରେ ନିଆଁ ଜଳି ଉଠିଲା । ତା ପରେ ପୁରୁଷ ସ୍ୱରର ଚିତ୍କାର ଶୁଣି ପଣ୍ଡାନ୍ ଚମକି ପଡ଼ିଲେ । ସେ ଚାଲି ନିଜ ଗୁମ୍ଫାରୁ ବାହାର ନିଆଁ ଜଳୁଥିବା ସ୍ଥାନ ପାଖକୁ ଚାଲି ଯାଉଥିଲେ । )

କାର୍ତ୍ତିକ—କୁଆଡ଼େ ଯାଉଛନ୍ତି ସାର୍ ?

ପଣ୍ଡାନ୍ଦ—ଲଲାଟେନ୍ଦୁକୁ ଦେଖିବାକୁ ଅନେକ ଆଶା କରି ଆସିଥିଲି । କିନ୍ତୁ ପାରିଲିନି ।

କାର୍ତ୍ତିକ—ଲଲାଟେନ୍ଦୁ ? ସେ ପୁଣି କିଏ ସାର୍ ?

ପଣ୍ଡାନ୍ଦ—ଏ ଯେଉଁ ଚିତ୍କାର ଶୁଣିଲ, ସେ ସେଇ ଲଲାଟେନ୍ଦୁର ଚିତ୍କାର । ସେ ଥିଲା ଇତିହାସପ୍ରସିଦ୍ଧ ବାଇବଣିଆ ଦୁର୍ଗର ଅଧୀଶ୍ୱର ନବାବ ସିରାଜଉଦ୍ଦୌଲାଙ୍କର ଅତି ଅନ୍ତରଙ୍ଗ ବନ୍ଧୁ, ଯାହାର ପ୍ରେରଣାର ଉତ୍ସ ଥିଲା ଏଇ ତପସ୍ୟା ।

କାର୍ତ୍ତିକ—ଏ ସବୁ ଘଟଣା ଆପଣ ସଂଗ୍ରହ କରି ପାରିଛନ୍ତି ସାର୍ ?

ପଣ୍ଡାନ୍ଦ—ହଁ ଶୁଣିବ ? ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର କଥା । ସେତେବେଳକୁ ମରହଟ୍ଟା ଶକ୍ତିକୁ ଦମନ କରି ମୋଗଲମାନେ ଦିଲ୍ଲୀ ସିଂହାସନରେ ଅଧିଷ୍ଠିତ ଥିଲେ ମଧ୍ୟ ସାଧାରଣ ଜନ-ଜୀବନ ଉପରେ ମରହଟ୍ଟା ବର୍ଗୀମାନଙ୍କର ଆକ୍ରମଣ ଅପ୍ରତିହତ ରହିଥାଏ । ଏଣେ ପୁଣି ଭାରତର ଐଶ୍ୱର୍ଯ୍ୟ ଦେଖି ବଣିକ ଇଂରେଜ ଜାତିର ସାମ୍ରାଜ୍ୟବାଦୀ ଶ୍ୟେନ ଦୃଷ୍ଟି ଏ ଦେଶ ଉପରେ ପଡ଼ିଲାଣି । କିନ୍ତୁ ବୀର ଓଡ଼ିଆ ପୁଅ ବର୍ଗୀମାନଙ୍କୁ ଏ ଲୁଣ୍ଠନକାରୀ ବର୍ବରୋଚିତ ମନୋବୃତ୍ତିର ସମୁଚିତ ଶିକ୍ଷା-ଦେଇ ସେମାନଙ୍କୁ ଚିରଦିନ ଲାଗି ବିଦାୟ କରି ଦେଉଥିଲେ ଏଇ ପବିତ୍ର ଉତ୍କଳ ଭୂମିରୁ । ସେଇ ବୀର ପାଇକ ପୁଅମାନଙ୍କ ମଧ୍ୟରୁ ଭଦ୍ରକ ପାଇକ ସୁବାର ଜଣେ ବୀର ପାଇକ ଥିଲା ଲଲାଟେନ୍ଦୁ ଓ ପାଇକ ସର୍ଦ୍ଦାର ଶମ୍ଭୁଶୀଳଙ୍କର ପ୍ରିୟ ଥିଲା ତପସ୍ୟା । ସେ ପ୍ରାୟ ଦୁଇଶହ ବର୍ଷ ତଳର କଥା ।

(Flesh back) ( Light out)

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ମଞ୍ଚ ଆଲୋକିତ ହେଲାବେଳକୁ ଦେଖାଗଲା ଏକଲୟରେ ଲଲାଟେନ୍ଦୁ ନନ୍ଦଣ, ମୁଗୁରରେ ଗଢ଼ିଚାଲିଛି ଚନ୍ଦ୍ରୟାର ମାର୍ବଲ ପଥରର ମୂର୍ତ୍ତି । ନିକଟରେ ମୂର୍ତ୍ତିର ଭଙ୍ଗିମାରେ ବସି ରହିଛି ଚନ୍ଦ୍ରୟା । କିଛି ସମୟ ପରେ ବଡ଼ କଷ୍ଟ ଅନୁଭବ କରୁଛି ଚନ୍ଦ୍ରୟା ]

ଚନ୍ଦ୍ରୟା—ଲଲାଭାଇ···ଏ ଲଲାଭାଇ, ଆରେ···ମୁଁ ଯେ ଆଉ ପାରୁନି ।

ଲଲାଟେନ୍ଦୁ—ଉହୁଁ-ଉହୁଁ—ଏଇ ସରିଗଲା ପରା ! ଆଉ ଟିକଏ । (ଚନ୍ଦ୍ରୟାକୁ ଚାହିଁ) ଆରେ ଯେ କ'ଣ ? ଦେଲୁ ସବୁ ସାରିଦେଲୁ । ମୋ ସୁନା ଭଉଣୀଟା ପରା ! ଯେମିତି ବସିଥିଲୁ ସେମିତି ବସିଯା ।

ଚନ୍ଦ୍ରୟା—ନା, ମୁଁ ଆଉ ପାରିବିନି ।

ଲଲାଟେନ୍ଦୁ—ପାରିବୁନି ତା ହେଲେ ?

ଚନ୍ଦ୍ରୟା—ନା ତ କହିଲି ?

ଲଲାଟେନ୍ଦୁ—ବେଶ ଠିକ୍ ଅଛି ।

(ମୁହଁ ବୁଲାଇ କାମରେ ଲାଗିଲା ।)

ଚନ୍ଦ୍ରୟା—(ଲଲାଟ ରାଗିବା ଦେଖି ସଜାଡ଼ି ହୋଇ ବସିଲା ।) ଆହା ମୋ ରାଗ । ରାଗ ନା ଲଙ୍କା ମ । ହେଉ ଦେଖ—ଏଇ

ହେଲ ତ ? ମଲ, ଇଆଡ଼େ ଦେଖୁ ନ କାହିଁକି ? ନ ଦେଖ । ଖରାପ ହେଲେ ମୋର କ'ଣ ହୋଇଯିବ ଯେ—ଯାହାର ଯିବ ଯିବ—( ତଥାପି ଲଲାଟର ପରିବର୍ତ୍ତନ ନ ଦେଖି ଗୋଡ଼ ଝିପି ଉଠିଲା । ) ତା ଛଡ଼ା ମୁଁ ତ ଆଜ ଚିରଦିନକୁ ଭଗ୍ନବଦନ, ଭଗ୍ନବ ତୁମର ମୂର୍ତ୍ତିଟା । ନନ୍ଦା ହେଲେ ତୁମର ହେବ, ତୁମ ଜାତିର ହେବ । ଧାରା କଳଙ୍କ ଶିଳ୍ପୀଙ୍କ କୀର୍ତ୍ତିରେ କଳଙ୍କ ଲାଗିବ । ମୋର କ'ଣ ହେବ ଯେ—

( ଏହା କହି ଚନ୍ଦ୍ରୀ ପଥର ପଛରେ ଲୁଚିଗଲା । ଲଲାଟ ଚନ୍ଦ୍ରୀକୁ ନ ଦେଖି )

ଲଲାଟେନ୍ଦୁ—ଚାନ-ଚାନ ( ଚନ୍ଦ୍ରୀ ହସିଛି ) ଏ—ହସନା କହୁଛି—ମତେ କାହିଁକି ରଗାଉଛୁ କହିଲୁ ?

ଚନ୍ଦ୍ରୀ—( ଆସି ) ଏଁ ଏଁ କ'ଣ କହିଲ; କ'ଣ କହିଲ ? ତୁମେ ରାଗୁଛ ? ସତ କହିଲ···ଲଲାଭାଇ, ତୁମେ ମୋ ଉପରେ ରାଗିଛ ? ମାନେ ଲଲାଭାଇ, ତୁମେ ମୋ ଉପରେ ରାଗିଛ ?

( ଲଲାଟ ରାଗି ଖଟେଇ ହୋଇ ସମସ୍ୱରରେ ହସିଛି, ଏହା ଦେଖି ଚନ୍ଦ୍ରୀ ହସି ବୁଲିଯାଉଥିବାବେଳେ ଲଲାଟ ଚନ୍ଦ୍ରୀର ପଣତ କାନ ଧରେ )

ଚନ୍ଦ୍ରୀ—ଲଲାଭାଇ, ହେ ଲଲାଭାଇ, ତୁମ ଗୋଡ଼ ଧରୁଛି, ଛାଡ଼ିଦିଅ ।

ଲଲାଟେନ୍ଦୁ—ଛାଡ଼ିଦେବ—ନା—ହସୁନୁ –ଆଉ ଥରେ ଜୋରରେ ହସ । ହୁ—

( ଚନ୍ଦ୍ରୀ ମୁକ୍ତି ପାଇଁ ବ୍ୟସ୍ତ ହୋଇଉଠିଲା । )

ଚନ୍ଦ୍ରା—ଲଲ୍‌ଭାଇ, ମୋର ଦୋଷ ହୋଇଛି—ମୁଁ ଆଉ କେବେ ଏମିତ ହସିବ ନ ।

ଲଲଟେନ୍ଦୁ—ଦୋଷ ହୋଇଛି ତ ?

ଚନ୍ଦ୍ରା—ହଁ ହୋଇଛି ।

ଲଲଟେନ୍ଦୁ—ବେଶ୍ ତା ହେଲେ କହିଲ, ରୋଗ ହେଲେ କ'ଣ ଦିଆଯାଏ ?

ଚନ୍ଦ୍ରା—ହଁ, ଔଷଧ !

ଲଲଟେନ୍ଦୁ—ଆଉ ରୋଗୀକୁ ?

ଚନ୍ଦ୍ରା—ରୋଗୀକୁ—ରୋଗୀକୁ—ପଥ୍ୟ ।

ଲଲଟେନ୍ଦୁ—ଅଚ୍ଛା, ଦୋଷୀକୁ ?

ଚନ୍ଦ୍ରା—ହଁ, କ୍ଷମା······

ଲଲଟେନ୍ଦୁ—( କାନ ଧରି ) କହ—କହ···

ଚନ୍ଦ୍ରା—ନାଇଁ-ନାଇଁ-ଦଣ୍ଡ ।

ଲଲଟେନ୍ଦୁ—ତେବେ— ( ଜୋରରେ ଟାଣିଛି । )

( କ୍ରମଶ ଅନ୍ଧାର )

ଚନ୍ଦ୍ରା—ଏ-ଏ- ଲଲଭାଇ, ଆରେ ଏ କ'ଣ ହେଉଛି ମ ? ଆଃ-ଏ ମା, ତୁମେ ଏତେ ଦୁଷ୍ଟ, ଛି···

ଲଲଟେନ୍ଦୁ—ତାନ ।

ଚନ୍ଦ୍ରା—ନା-ନା

(କହି ଗୁଲିଗଲା । ଲଲଟ ତାନ ତାନ ଡାକୁଥାଏ । )

( ଅନ୍ଧାର )

## ଦ୍ୱିତୀୟ ଦୃଶ୍ୟ

[ ଶମ୍ଭୁ ଶଲ୍ୟଙ୍କ ଘର, ବାହାରୁ କିଏ ଘୋଡ଼ାରୁ ଓହ୍ଲାଇବାର ଶୁଣାଗଲା । ]

ସଲ୍‌ଓ୍ୱାତ୍‌—(ଭିତରୁ) କୋଇ ହେ ? କୋଇ ହେ ?

ଚନ୍ଦ୍ରା—( ଭିତରୁ କହୁ କହୁ ଆସିଲା ) କିଏ ? କାହାକୁ ଖୋଜୁଛନ୍ତି ଆପଣ ? ?

ସଲ୍‌ଓ୍ୱାତ୍‌—(ଭିତରୁ) ପାଇକ ସର୍ଦ୍ଦାର ଶମ୍ଭୁ ଶଲ୍ୟଙ୍କ ଡିଆସ ଏଇଠା ?

ଚନ୍ଦ୍ରା—ହଁ, କିଛି କହିବାର ଅଛି ଆପଣଙ୍କର ?

ସଲ୍‌ଓ୍ୱାତ୍‌—ଅଛି ।

ଚନ୍ଦ୍ରା—ଆସନ୍ତୁ, ଭିତରକୁ ଆସନ୍ତୁ ।

ସଲ୍‌ଓ୍ୱାତ୍‌—(ଆସି) ସର୍ଦ୍ଦାର କୁଆଡ଼େ ଯାଇଛନ୍ତି—କହିପାରିବେ ?

ଚନ୍ଦ୍ରା—କ୍ଷେତକୁ ।

ସଲ୍‌ଓ୍ୱାତ୍‌—ତା' ହେଲେ···

ଚନ୍ଦ୍ରା—ବାପାଙ୍କ ପାଖରେ କିଛି କାମ ଥିଲା ? ମୋତେ କହନ୍ତୁ, ଆସିଲେ କହିଦେବି ।

ସଲ୍‌ଓ୍ୱାତ୍‌—ନବାବ ବାହାଦୁର ପତ୍ର ଦେଇଛନ୍ତି ।

ଚନ୍ଦ୍ରା—ମୋତେ ଦେଇଯାଆନ୍ତୁ, ବାପା ଆସିଲେ ଦେଇଦେବି ।

ସଲ୍‌ଓ୍ୱାତ୍‌—ସର୍ଦ୍ଦାରଙ୍କ ବ୍ୟତୀତ ଅନ୍ୟ କାହାକୁ ଦେବାପାଇଁ ହଜୁରଙ୍କର ହୁକୁମ ନାହିଁ ।

ଚନ୍ଦ୍ରା—ତା' ହେଲେ ଅପେକ୍ଷା କରନ୍ତୁ, ବାପା ଆସନ୍ତୁ ।

ସଲାଓ୍ବାତ୍—ମୁଁ ତ ଅପେକ୍ଷା କରିପାରିବନି । ମୋତେ ସଙ୍ଗେ ସଙ୍ଗେ ଯିବାକୁ ହେବ । ଦୟାକରି କ୍ଷେତରୁ ଆପଣଙ୍କ ବାପାଙ୍କୁ ଟିକିଏ ଡାକି ଦେଇପାରିବେ ?

ଚନସ୍ମା—ନିଶ୍ଚୟ ପାରିବି । ଆପଣଙ୍କ ନାଁ ?

ସଲାଓ୍ବାତ୍—ମୋ ନାଁ ସଲାଓ୍ବାତ୍ ଖାଁ । ମୁଁ ନବାବ ଆଲିବର୍ଦ୍ଦି ଖାଁଙ୍କର ଜଣେ ସିପାହୀ ।

ଚନସ୍ମା—ପତ୍ରଟି ବଡ଼ ଗୁରୁତ୍ୱପୂର୍ଣ୍ଣ ?

ସଲାଓ୍ବାତ୍—ହୋଇଥିବ ।

ଚନସ୍ମା—ଠିକ୍ ଅଛି । ଆପଣ ଏଇଠି ଟିକିଏ ଅପେକ୍ଷା କରନ୍ତୁ । ମୁଁ ବାପାଙ୍କୁ ଡାକି ଦେଉଛି । ତାଙ୍କର ମଧ୍ୟ କ୍ଷେତରୁ ଫେରିବାର ବେଳ ହେଲାଣି । ଏଇ ପ୍ରାୟ ଆସୁଥିବେ ।

ସଲାଓ୍ବାତ୍—ଆପଣଙ୍କ ନାଆଁ ?

ଚନସ୍ମା—ମୋ ନାଆଁ ଚନସ୍ମା । ବାପା ଡାକନ୍ତି ଚାନି । ଆପଣ ଅପେକ୍ଷା କରନ୍ତୁ, ମୁଁ ଯାଉଛି ବାପାଙ୍କୁ ଡାକିଦେବି । (ଯାଉ ଯାଉ ଫେରି) ଏଇ ତ ବାପା ଆସିଲେଣି ।

( ଶନ୍ତୁ ଶଲ୍ୟଙ୍କ ପ୍ରବେଶ )

ଶନ୍ତୁଶଲ୍ୟ—ଆପଣ ? ?

ସଲାଓ୍ବାତ୍—ସଲାମ ସର୍ଦ୍ଦାରଜୀ । ମୋ ନାଁ ସଲାଓ୍ବାତ ଖାଁ ! ମୁଁ ନବାବ ଅଲିବର୍ଦ୍ଦି ଖାଁଙ୍କର ଜଣେ ସିପାହୀ । ନବାବ ବାହାଦୁର ପତ୍ର ଦେଇଛନ୍ତି ।

ଶନ୍ତୁଶଲ୍ୟ—( ପତ୍ର ପାଠ ମାତ୍ରେ ଚିନ୍ତାର ରେଖା ଫୁଟି ଉଠିଲା । ) ଆଉ କିଛି କହିବାର ଅଛି ?

ସଲାଓ୍ବାତ—ନା, ମୁଁ ଆସୁଛି ସର୍ଦ୍ଦାରଜୀ । (ପ୍ରସ୍ଥାନ)

(ଦୀର୍ଘଶ୍ୱାସ ଛାଡ଼ି ଶନ୍ତୁଶଲ୍ୟ କହିଲେ )

ଚନସ୍ମା—ଜଣ ହୋଇଛୁ ବାପା ? ନବାବ କାହିଁକି ପତ୍ର ଦେଇଛନ୍ତି ?

ଶତ୍ରୁଶଲ୍ୟ—ଆକ୍ରମଣ କରିବାକୁ ଆସିଛନ୍ତି ବର୍ଗୀମାନେ । ସେମାନଙ୍କର ମୁକାବିଲା କରିବାକୁ ହେବ ।

ଚନସ୍ମା—ପୁଣି ସେମାନେ ଆସିଛନ୍ତି ?

ଶତ୍ରୁଶଲ୍ୟ—ହଁ ମା, ପୁଣି ସେମାନେ ଆସିଛନ୍ତି । ସେମାନେ ଦସ୍ୟୁ, ଅତ୍ୟାଚାରୀ । ସେମାନଙ୍କୁ ବିଶ୍ୱାସ କରିଯାଏ ନା । ସେମାନେ ସୁଯୋଗ ଜଗିଥାନ୍ତି । ସୁବିଧା ପାଇଲେ କରନ୍ତି ଲୁଟତରାଜ । ଏଇ ସୁନା ଫଳନ୍ତା ଭୂଇଁ ଖଣ୍ଡିକ ଉପରେ ସେମାନଙ୍କର ବଡ଼ ଲୋଭ । ଯେ ଥରେ ଏହାର ସୁଖ ସମ୍ଭାରର ସନ୍ଧାନ ପାଇଛି, ସେ ଆଉ ଛାଡ଼ି ଯିବାକୁ ନାରାଜ ।

ଚନସ୍ମା—କିନ୍ତୁ, ବାପା, ଏ ବର୍ଗୀମାନେ ତ ଆଗରୁ କେତେଥର ଆଘାତ ପାଇ ଫେରି ଯାଇଛନ୍ତି ।

ଶତ୍ରୁଶଲ୍ୟ—ହଁ ମା, ଫେରିଯାଇଛନ୍ତି ସତ; କିନ୍ତୁ ସେମାନେ ଏଥର ବିପୁଳ ସଂଖ୍ୟାରେ ଆସୁଛନ୍ତି ଆକ୍ରମଣ କରିବାକୁ । ଆଉ ସେମାନଙ୍କର ସେନାପତି ଭାସ୍କର ପଣ୍ଡିତ....

ଚନସ୍ମା—ସେଇ ଦସ୍ୟୁ ଭାସ୍କର ପଣ୍ଡିତ ?

ଶତ୍ରୁଶଲ୍ୟ—ସେଇ ଦସ୍ୟୁ ଭାସ୍କର ପଣ୍ଡିତ । ସେ ବୈତରଣୀ ନଦୀ ଡେଇଁ ଆଠଆପଦା ନିକଟରେ ଜଗନ୍ନାଥ ଦୁର୍ଗକୁ ଦଖଲ କରି ନେଇଛି ।

ଚନସ୍ମା—ସେମାନଙ୍କୁ ବାଧା ଦେବାକୁ କେହି ନ ଥିଲେ ?

ଶତ୍ରୁଶଲ୍ୟ – ଥିଲେ ମା, ଯଥାଶକ୍ତି ବାଧାଦେଇ ମଧ୍ୟ ଆମ ପାଇକମାନେ ପରାସ୍ତ ହୋଇଛନ୍ତି ।

ଚନସ୍ମା—ପରାସ୍ତ ହୋଇଛନ୍ତି ?

ଶତ୍ରୁଶଲ୍ୟ—ହଁ ମା, ପରାସ୍ତ ହୋଇଛନ୍ତି । ବର୍ଗୀମାନଙ୍କ ହାତରେ ପ୍ରଥମଥର ପାଇଁ ପରାସ୍ତ ହୋଇଛନ୍ତି ପାଇକ ବାହିନୀ । କାଇଁ ପଢ଼ୁଛୁ ଓଡ଼ିଆ ପାଇକର ଟେକ ! ସମ୍ମୁଖ ସମରରେ ଓଡ଼ିଆ ପାଇକର ପରାଜୟ ।

( ଭିତରୁ ଶୁଭଦ୍ରା ଆଣ୍ଠୁଙ୍କର ଚାନ୍ଦ ଚାନ୍ଦ ଡାକ ପ୍ରବେଶ, ହାତରେ ଗାମୁଛା ଓ ତେଲଣିଶି )

ଶୁଭଦ୍ରା—ବେଳ ପର ମୁଣ୍ଡ ଉପରକୁ ଗଲାଣି ପୁଅ ! ଯା, ତେଲ ଲଗାଇ ଗାଧୋଇ ଆ ।

ଶତ୍ରୁଶଲ୍ୟ—କ'ଣ ଯେ ହେବ ? ଆଜ ବାଘ ଘରେ ମିରଗର ନାଟ ଲାଗିଛି । ମୁସଲମାନ ଓ ମରହଟ୍ଟା ମଧ୍ୟରେ ଚାଲିଛି ବଳ କଷା କଷି । ଜଣେ ଦସ୍ୟୁ ଲୁଣ୍ଠନକାରୀ, ଆଉ ଜଣେ ବିଧର୍ମୀ । ଜଣେ ଅତ୍ୟାଚାରୀ, ଆଉ ଜଣେ ଶାସକ । କହ ତ ମା, କିଏ ଆମର ଶତ୍ରୁ ?

ଶୁଭଦ୍ରା—ଆଉ ବକର ବକର କରନା ପୁଅ । କିଏ ଯେ ଘୋଡ଼ା-ମୁହାଁ ଘୋଡ଼ାରେ ଚଢ଼ି ଆସିଲ ଯେ ସବୁ ଗୋଳମାଳ କରି ଦେଇଗଲ । ତୁ ଗଲୁ କାପ । ଭାତ ତିଅଣ ଥଣ୍ଡା ହୋଇ-ଯାଉଛି । ମୁଁ ଭାତ ବାଢ଼ୁଛି । ତୁ ସଅଳ ଆ ।

( ପ୍ରସ୍ଥାନ )

ଶତ୍ରୁଶଲ୍ୟ—କହ ମା, କିଏ ଆମର ବନ୍ଧୁ ? କାହାକୁ ଆମେ ସାହାଯ୍ୟ କରିବୁଁ ?

ତନୟା—ଦେଖ ବାପା, ଧର୍ମ ତ ଅନେକ । ହେଲେ ଲକ୍ଷ୍ୟ ଏକ । ଆମେ ସେଇ ଈଶ୍ୱର ବା ଆଲ୍ଲାଙ୍କର ସନ୍ତାନ । ସମସ୍ତେ

ମଣିଷ । ତେଣୁ ମୋ ମତଟି ଯଦ ପଚ୍ଚରଲ—ମୁଁ କହ୍ବ
ମଣିଷ ଉପରେ ଯେ ଅତ୍ୟାଚ୍ଚର କରେ ସେ ମଣିଷର ଶତ୍ରୁ ।

ଶତ୍ରୁଶଲ୍ୟ—ଠିକ୍ କହୁଛୁ ମା ! ମଣିଷ ଉପରେ ଯେ ଅତ୍ୟାଚ୍ଚର କରେ ସେ ମଣିଷର ଶତ୍ରୁ । ସେ ସ୍ୱଜାତୀୟ ହେଉ ବା ବିଜାତୀୟ ହେଉ । ଏଇ ବର୍ଗୀମାନଙ୍କ ଦ୍ୱାରା ଓଡ଼ିଶାର କେତେ ପୁରପଲ୍ଲୀ ଉଜୁଡ଼ି ଯିବାକୁ ବସିଛି । ବୃଦ୍ଧ ହୋଇ ବୃଦ୍ଧ ରମଣୀ ଓ ପିଲାଛୁଆଙ୍କ ଉପରେ କି ଅକଥନୀୟ ଅତ୍ୟାଚ୍ଚର ଚଳାଇଛନ୍ତି ଏମାନେ । ଏଥର ସେମାନଙ୍କୁ ସମୁଚିତ ଶିକ୍ଷା ଦେବାକୁ ହେବ ।

ଚିନ୍ମୟୀ—ହେଉ, ବେଳ ଗଡ଼ିଗଲଣି ବାପା ! ଆଈମା ତେଣେ ରହୁଥିବେ ।

ଶତ୍ରୁଶଲ୍ୟ—ହେଉ, ଯାଉଛି ମା ! ତୁ ଟିକିଏ ଖବର ଦେ ମା ! ଆଜି ସନ୍ଧ୍ୟା ବେଳକୁ ବସ୍ତିରେ ସମସ୍ତେ ଯେମିତି ଆଖଡ଼ା ଘରକୁ ଆସନ୍ତି ।

( ପ୍ରସ୍ଥାନ )

ଚିନ୍ମୟୀ—ତୁମେ ଯାଅ ବାପା । ମୁଁ ସବୁ ଠିକ୍ କରି ଦେଉଛି । ପାଇକପୁଅ । ଜାଗିଶ ଖାଉଛନ୍ତି । ଯୁଦ୍ଧକୁ ଯିବେନି ।

ଅମର—(ପ୍ରବେଶ କରି) ଯାଉ ନାହାନ୍ତି । କିଏ ମନା କରୁଛି । ହେଲେ ମୁଁ ଯିବି ନି ।

ଚିନ୍ମୟୀ—କ'ଣ କହିଲ ଯିବନି ?

ଅମର—ମୁଁ ସବୁ ଶୁଣିଛି । ସା'ନ୍ତେ ଯୁଦ୍ଧ ନାଁ ଶୁଣି ପୁଣି ମାତିଲେଣି । ହେଲେ ଯୁଦ୍ଧକୁ କିଏ ଯିବ ? ଲଙ୍ଗଳ କୋଡ଼ି ଭଲ କି ଆମେ ଭଲ ।

ଚନୟ୍ସା—କ'ଣ ହେଲା ? ଲଙ୍ଗଳ କୋଡ଼ ଭ୍ଲ କ ଆମେ ଭଲ । ଆଚ୍ଛା, ଶୁଣ, ବାପା ବର୍ତ୍ତମାନ ତୁମକୁ ଖବର ଦେବାପାଇଁ କହିଗଲେ । ଆଜ । ଆଜ ମୁଁ ବ ତୁମକୁ କହିଦେଲ । ପୁଣି ବର୍ଗୀ ସହିତ ଯୁଦ୍ଧ ହେବ-ହେବ-ହେବ ।

ଅମର—ହଉ, କଏ ମନା କରୁଛି । ହେଲେ ମୋତେ ଖବର ଦେଲେ ମୁଁ କ'ଣ ଏକା ଯୁଦ୍ଧକୁ ଯିବ ? ମୁଁ ଯେମିତି ଉତ୍କଳର ଗଜପତି ? ? ?

ଚନୟ୍ସା—ମୁଁ ସେ ସବୁ କଥା କହିପାରିବି ନାହିଁ । ବାପା କହିଛନ୍ତି ଆଜ ସନ୍ଧ୍ୟାକୁ ଆଖଡ଼ାଶାଳକୁ ସମସ୍ତଙ୍କୁ ଡକେଇ ଥିବ ।

ଅମର—ହାଁ—ସେ କଥା କହୁନୁ—ଏଇ ସମସ୍ତଙ୍କୁ ଡାକଦେବା କଥା ତ । ତା ମୁଁ ଡାକ ଦେଇ ପାରିବନ । ସାନ୍ତେ କାହାନ୍ତି ?

ଚନୟ୍ସା—ଗାଧୋଇ ଯାଇଛନ୍ତି । ତୁମେ ଏଇଠି ଟିକଏ ବସ । ବାପା ଏଇନେ ଆସିବେ ।

( ପ୍ରସ୍ଥାନ )

ଅମର—ଯୁଦ୍ଧ ନା ଶୁଣିଲେ ସାନ୍ତେ ଆମର ଉଠି ବସିବେ । ମୋ ଉପରେ ଦାୟିତ୍ୱ ସମସ୍ତଙ୍କୁ ଏକଜୁଟ କରିବା କଥା ତ, ସେଇଟା ମୁଁ କରିଦେବ । ହେଲେ ମୁଁ—ମୁଁ ଛିଡ଼ା କାଟିଦେବ । ଆରେ ବାପରେ—କ ଭୟଙ୍କର କାମ ଏ ଯୁଦ୍ଧ ! ଯେତ କରି ଖଣ୍ଡାଟା କେତେବେଳେ ବୁଲିଯିବ ତ ମୁଣ୍ଡଗଣ୍ଡି ଗ୍ଧୁଏଁ ଗ୍ଧୁଏଁ ଅଲଗା । ପୈତୃକ ପ୍ରାଣଟା ଫୁଟ୍‌କନା ଉଡ଼ିଯାଇଥିବ । ପ୍ରାଣ ଯାଉ ବରଂ ଶେଷକୁ ଏ ମୁଣ୍ଡ ଗଣ୍ଡି ଦଟା ଛଟପଟ ନ ହୁଅନ୍ତା କ ! ଓ ସେ କ କଷ୍ଟ ! !

( ମଞ୍ଚ ଅନ୍ଧାର )

## ତୃତୀୟ ଦୃଶ୍ୟ

[ ପଦଚାରଣ କରୁଥାନ୍ତି ଭାସ୍କର ପଣ୍ଡିତ ।
ଆତ୍ମାରାମ ଛିଡ଼ା ହୋଇଥାନ୍ତି । ]

ଭାସ୍କର—ହାଃ ହାଃ-ହାଃ-ଆତ୍ମାରାମ । ମେଦିନୀପରେ ଓଡ଼ିଆ ପାଇକର ଗର୍ବ ଆଜ ଭୂଲୁଣ୍ଠିତ ହୋଇଛି । ବହୁଦିନର ବାଞ୍ଛିତ ଆକାଙ୍କ୍ଷା ଆଜ ମୋର କାର୍ଯ୍ୟରେ ପରିଣତ ହୋଇଛି । ଏଇ ଜଗନ୍ନାଥ ଦୁର୍ଗ ଆଜ ଆମର କରାୟତ୍ତ ହୋଇଛି । ଜଗନ୍ନାଥ ଦୁର୍ଗ ହେବ ମୋଗଲ୍ ସାମ୍ରାଜ୍ୟ ପତନର ପ୍ରାଣପିଣ୍ଡ । ଏଇ ଦୁର୍ଗକୁ କେନ୍ଦ୍ରକରି ଚାରିଆଡ଼େ ଚାଲିବ ଲୁଣ୍ଠନରାଜ । ଚାଲିବ ଧ୍ୱଂସର ବହ୍ନିଶିଖା । ଏକ ମହେଶ୍ୱରଙ୍କ ସନ୍ତାନ ହୋଇ ଆମେ ଖୋଜି ବୁଲିବୁ କଙ୍କରିତ ବନଭୂଇଁର ଖାଦ୍ୟକଣା । ଆଉ ଏମାନେ ଗର୍ଭସାତ୍ କରିବେ ସ୍ୱର୍ଣ୍ଣ କେଦାରର ଶସ୍ୟମଞ୍ଜରୀ । ଜଣେ ଭୋଗ କରିବ ଅନାହାରର ଯନ୍ତ୍ରଣା—ଆଉ ଜଣେ ଭୋଗ କରିବ ସ୍ୱର୍ଗ ସୁଖ କାହିଁକି ? ମୁଁ ଭାସ୍କର, ଭାସ୍କର ପଣ୍ଡିତ ବଞ୍ଚି ଥାଉଁ ଥାଉଁ କଦାପି ତାହା କରାଇ ଦେବି ନାହିଁ । ଏ ବିଜାତୀୟ ଯବନମାନେ ହେଉଛନ୍ତି ଏ ଦେଶର ଶାସକ ନା ? ଶାସକ ? ହୁଃ……

ଆତ୍ମାରାମ—ପଣ୍ଡିତ ଜୀ-ବଡ଼ ମନ୍‌ସୁବାଦାର ବାହାରେ ଅପେକ୍ଷା କରିଛନ୍ତି ।

ଭାସ୍କର—ଆସିବାକୁ କୁହ ।

ଆତ୍ମାରାମ—ଯେ ଆଜ୍ଞା । (ପ୍ରସ୍ଥାନ) ।

(ପ୍ରବେଶ କଲେ ଶମ୍ଭୁ ରାଓ)

ଶମ୍ଭୁରାଓ—ଅଭିବାଦନ ଗ୍ରହଣ କରନ୍ତୁ ପଣ୍ଡିତ ଜୀ ।

ଭାସ୍କର—ଶମ୍ଭୁରାଓ ! ଆଜ ବିଭିନ୍ନ ସ୍ଥାନରୁ ଆସିଥିବା ଖାଦ୍ୟଦ୍ରବ୍ୟ ଓ ଧନରତ୍ନ ମହାରାଷ୍ଟ୍ରକୁ ପଠାଇବାର ବ୍ୟବସ୍ଥା କର । ଆଉ ସେ ପାଖରୁ କିଛି ଖବର ଆସିଛି ?

ଶମ୍ଭୁରାଓ—ହଁ, ଆସିଛି । ବଙ୍ଗର ନବାବ ଆଲିବର୍ଦ୍ଦି ଖାଁଙ୍କର ପ୍ରତିନିଧି ସାହାଜାଦା ସିରାଜ ସାଳନ୍ଦୀ ନଦୀ କୂଳରେ ଛାଉଣୀ ପକାଇଛନ୍ତି । ଆଜ ଆମର ଆକ୍ରମଣ ନିଷ୍ଫଳ ହୋଇଅଛି ।

ଭାସ୍କର—ସେ ଖବର ମୁଁ ପାଇଛି । ସେଥିପାଇଁ ବିଚଳିତ ହେବାର କିଛି ନାହିଁ । ସେମାନେ ଯେତେବେଳେ ଦଳ ଦଳ ହୋଇ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିବେ, ଠିକ୍ ସେତିକ-ବେଳେ ସେମାନଙ୍କୁ ଆକ୍ରମଣ କରିବାକୁ ହେବ ଏବଂ ସେମାନଙ୍କର ଖାଦ୍ୟସାମଗ୍ରୀ ସବୁ ଲୁଣ୍ଠନ କରିବାକୁ ହେବ ।

ଶମ୍ଭୁରାଓ—ହଁ, ପାହାଡ଼ ଆଡ଼ୁଆଳରେ ଏବଂ ଜଙ୍ଗଲ ଅନ୍ତରାଳରେ ରହି ସେମାନଙ୍କୁ ଆକ୍ରମଣ କରିବାକୁ ପଡ଼ିବ ।

ଭାସ୍କର—ଠିକ୍ କହିଚ । ଏହା ହେବ ଆମର ଉପଯୁକ୍ତ ରଣ-କୌଶଳ । ହଁ, ଆଉ କିଛି ଖବର ରଖିଛ ?

ଶମ୍ଭୁରାଓ—ନା, ପଣ୍ଡିତ ଜୀ—

ଭାସ୍କର—ମୁଁ କିନ୍ତୁ ରଖିଚି । ସବୁଠୁ ଗୋପନୀୟ ଅଥଚ ଗୁରୁତ୍ୱପୂର୍ଣ୍ଣ ଖବରଟା ପହଞ୍ଚିଚି ।

ଶମ୍ଭୁରାଓ—କି ଖବର ପଣ୍ଡିତ ଜୀ ?

ଭାସ୍କର—ସିରାଜ ଉଦ୍ଦ୍ଦଲାର ପାଇକମାନଙ୍କର ସାହାଯ୍ୟ ନେଉଛନ୍ତି— ଆଉ ପାଇକ ସର୍ଦ୍ଦାର ଶତ୍ରୁଶଲ୍ୟ ମଧ୍ୟ, ତାଙ୍କୁ ସାହାଯ୍ୟ କରିବାକୁ ସଜବାଜ ହେଉଛନ୍ତି ।

ଶମ୍ଭୁରାଓ—ହଁ, ହଁ, ମୁଁ ବି ଏ ଖବର—

ଭାସ୍କର—ଉଚିତ୍‌ଥିବ ମନେହେଉଛି । ଶୁଣ-ହଁ, ଶୁଣ ଶମ୍ଭୁରାଓ ! ସମସ୍ତେ କହୁଛନ୍ତି, ଆମର ବର୍ଗୀମାନେ କୁଆଡ଼େ ଦସ୍ୟୁ, ଅତ୍ୟାଚାରୀ । ଏ କଥା ଯଦି ସତ ହୋଇଥାଏ, ତା'ହେଲେ ଆମକୁ ସେଇ ଦସ୍ୟୁର କୌଶଳ ଆଜ ଅତ୍ୟାଚାରୀର ହାତସ୍ତ ନେଇ ଆଗେଇବାକୁ ହେବ । ସାରା ମୁସଲମାନ ସାମ୍ରାଜ୍ୟଟାକୁ ଛାରଖାର କରିଦେବାକୁ ହେବ ।

ଶୁଭଦେବ—( ଛଦ୍ମବେଶରେ ଦ୍ରୁକେଣି ) ବମ୍ ଶିବ ଶମ୍ଭୋ, ବମ୍ ଶିବ ଶମ୍ଭୋ ! (ବସିଲେ)

ଭାସ୍କର—ପ୍ରଣାମ ସାଧୁ ମହାରାଜ !

ଶୁଭ—ବମ୍ ଶିବ ଶମ୍ଭୋ···ବମ୍ ଶିବ ଶମ୍ଭୋ ।

ଭାସ୍କର—ସାଧୁ ମହାରାଜ । ସମସ୍ତ କୁଶଳ ତ ?

ଶୁଭ—କୁଶଳ ! ମୋର କୁଶଳ କଥା ପଚାରୁଛ ବାବା (ହସି) ମୋର ପୁଣି କୁଶଳ କ'ଣ ବାବା ! ଜଗତର କୁଶଳରେ ମୋର କୁଶଳ । ମାତ୍ର ବର୍ତ୍ତମାନ ଆବଶ୍ୟକ ଖଣ୍ଡିଏ ମୂଷଳ । ଯେଉଁଥିରେ ମୁସଲମାନ ସାମ୍ରାଜ୍ୟ ହେବ ନିର୍ମୂଳ ।

ଭାସ୍କର—ଆଚ୍ଛା, ସାଧୁବାବା, ଏ ଘମାଘୋଟ ଯୁଦ୍ଧର ଫଳାଫଳ କ'ଣ କହିପାରିବେ ? ମରହଟ୍ଟା ବର୍ଗୀ ଆଜ ଜଗନ୍ନାଥ ଦୁର୍ଗକୁ କେନ୍ଦ୍ର କରି ତା'ର ଭାଗ୍ୟ ନିୟନ୍ତ୍ରଣ କରିବାକୁ ଯାଉଛୁ । କହିପାରିବେ ବାବା ! କ'ଣ ହେବ ଏ ମରହଟ୍ଟା ଜାତିର ଭବିଷ୍ୟତ ?

ଶୁଭ—ପାରିବି, ସବୁ ପାରିବି । ଭୋଳାମହେଶ୍ୱରଙ୍କ କୃପା ହେଲେ ସବୁ କହି ପାରିବି, 'ବମ୍ ଶିବ ଶମ୍ଭୋ', 'ବମ୍ ଶିବ ଶମ୍ଭୋ'

ଭାସ୍କର
ଶମ୍ଭୁ } —ତେବେ କୁହନ୍ତୁ ମହାରାଜ !

ଶୁଭ—ହାତ ଦେଖି ? ( ଭାସ୍କର ହାତ ଦେଖାଇଲେ ) । ହୁଁ ବମ୍ ଶିବ ଶମ୍ଭୋ ! ଆପଣଙ୍କ ରାଜଚକ୍ରବର୍ତ୍ତୀ ହେବାର ଚିହ୍ନ ଅଛି । ନିଶ୍ଚୟ ସଫଳ ହେବ । ତେବେ ମଝିରେ ମଝିରେ ବହୁ ବାଧାବିଘ୍ନ ଦେଇ ଗତି କରିବାକୁ ପଡ଼ିପାରେ ।

ଭାସ୍କର—ଆପଣ ଠିକ୍ କହୁଛନ୍ତି, ମୁଁ ରାଜଚକ୍ରବର୍ତ୍ତୀ ହେବି ?

ଶୁଭ—ବମ୍ ଶିବ ଶମ୍ଭୋ ! ସବୁ ଭାଗ୍ୟ ! ସବୁ ସେହି ଶିବ ଶମ୍ଭୋଙ୍କର ଇଚ୍ଛା ! ହସ୍ତରେଖା କେବେ ଭୁଲ ହୁଏନା—

ଶମ୍ଭୁରାଓ—ମୁଁ ତେବେ ଆସୁଛି ପଣ୍ଡିତ ଜୀ ! ଆଜି ମୋଗଲ ସୈନ୍ୟମାନଙ୍କର ଗତିବିଧି ଛଦ୍ମବେଶରେ ଅନୁଧ୍ୟାନ କରିବି ।

ଭାସ୍କର—ନା, ତୁମେ ବରଂ ଦୁର୍ଗରେ ଥାଅ । ମୁଁ ବାହାରେ ନବାବଙ୍କ ଶିବିରରେ ପ୍ରବେଶ କରିବି ।

ଶମ୍ଭୁରାଓ—ଆପଣଙ୍କୁ ଯଦି ସେମାନେ ଚିହ୍ନି ପାରନ୍ତି ?

ଭାସ୍କର—ତୁମେ ଯାଅ ଶମ୍ଭୁରାଓ ! ଛଦ୍ମବେଶରେ କପରି ସେଠାରେ ପ୍ରବେଶ କରିବାକୁ ହେବ, ସେଥିା ମତେ ବେଶ୍ ଭଲ ଭାବରେ ଜଣା ।

ଶମ୍ଭୁରାଓ—ଯାଉଛି, ପଣ୍ଡିତଜୀ ! (ପ୍ରସ୍ଥାନ)

ଶୁଭ—ବମ୍ ଶିବ ଶମ୍ଭୋ-ଯାଅ ବସ୍ତ ! ତୁମ ଉପରେ ମରହଟ୍ଟାର ଭାଗ୍ୟ ନିର୍ଭର କରୁଛି । କିଛି ଭୟ କରିବାର ନାହିଁ । କିନ୍ତୁ ଟିକିଏ ସାବଧାନତାର ସହିତ ମୁସଲମାନ ଶିବିରରେ ପ୍ରବେଶ କରିବ ।

ଭାସ୍କର—ଏଇ ଦେଖୁଛନ୍ତି ସାଧୁ ମହାରାଜ ! ମୁସଲମାନ ସୈନ୍ୟଙ୍କର ପୋଷାକ । ଏଇ ପୋଷାକ ପିନ୍ଧି ମୁଁ ମୋଗଲ ଶିବିରରେ

ପ୍ରବେଶ କରିବ । ସେମାନଙ୍କ ଭାଷା କହିବାରେ ମୁଁ ଖୁବ୍ ଅଭ୍ୟସ୍ତ ।

ଶୁଭ—ବୋମ୍ ଭାସ୍କର ପଣ୍ଡିତ । ବୋମ୍ ତୁମର ବୁଦ୍ଧି । ଛତ୍ରପତି ଶିବାଜୀ ଛଦ୍ମବେଶରେ ପୁନା ଦୁର୍ଗକୁ ପୁନଃ ଦଖଲ କରିବାର କୌଶଳ ତୁମେ ଠିକ୍ ରୂପେ ଅନୁକରଣ କରିଛ । ତୁମେ ହିଁ ଏ ମରହଟ୍ଟାର ଭାଗ୍ୟକୁ ବଦଳାଇ ପାରିବ ।

ଭାସ୍କର—ସେଇ ଆଶୀର୍ବାଦ କରନ୍ତୁ ସାଧୁ ମହାରାଜ !

ଶୁଭ ବୋମ୍ ବୋମ ନିଶ୍ଚୟ ପାରିବ । ତୁମେ ଛତ୍ରପତିଙ୍କର ଉପଯୁକ୍ତ ଦାୟାଦ । ହର୍ ହର୍ ମହାଦେବ ତୁମକୁ ସହାୟ ହୁଅନ୍ତୁ । କୁହ ମରହଟ୍ଟା ତିଲକ—"ଜୟ ଶିବ ଶମ୍ଭୋ" ।

ଭାସ୍କର—ଜୟ ଶିବ ଶମ୍ଭୋ, ଜୟ ଶିବ ଶମ୍ଭୋ— (ପ୍ରସ୍ଥାନ)

ଶୁଭ—ଯାଅ ବୀର ରଣେ ଧରଣୀ ବକ୍ଷୁ ପାପରାଶି ହେଉ କ୍ଷୟ ! ଭାସ୍କର ପଣ୍ଡିତ । ଏ ଦୁନିଆରେ ତୁମେ ନିଜକୁ ଏକା ବୁଦ୍ଧିମାନ୍ ବୋଲି ଭାବୁଚ ନା ? ପାଇକ ସର୍ଦ୍ଦାର ଶମ୍ଭୁ ଶର୍ମାଙ୍କର ଅନୁଚର ଏ ଶୁଭଦେବ, ଏ ଢଙ୍ଗରେ କିଛି କମ୍ ନୁହେଁ । ମୁସଲମାନ ଶିବିରରେ ପ୍ରବେଶ କରିବ ନା ?

(ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

[ ଶଙ୍କୁଣଙ୍କ ଘର, ତୁଳସୀ ଚଉରାମୂଳେ
ସଞ୍ଜବତୀ ଦେଇ, ମୁଣ୍ଡିଆ ମାରୁଛି
ଚନ୍ଦ୍ରା । ଆସିଛି ଲଳ୍ଟ ]

ଚନ୍ଦ୍ରା—ଏ ମା ! ତୁମେ କେତେବେଳୁ ?

ଲଳ୍ଟ— ଅନେକ ବେଳୁ । କଣ ମନାସିଲୁ ?

ଚନ୍ଦ୍ରା—ଆ-ହାଃ-ହାଃ-ଢଙ୍ଗ ।

ଲଳ୍ଟ—କହ ।

ଚନ୍ଦ୍ରା—କହୁ ନାହିଁ ।

ଲଳ୍ଟ—କହୁ ନାହିଁ । କହ !

ଚନ୍ଦ୍ରା—ଯାହା ସବୁଦିନେ ମନାସି ଜୁହାର କରେ ।

ଲଳ୍ଟ—ତୁ ତ ଆଜ ସବୁଦିନେ ସମାନ ହୋଇ ରହିନୁ । କାଲି ଥିଲୁ ଧୂଳିଘରର ଖେଳସାଥୀ, ହେଲେ ଆଜ···

ଚନ୍ଦ୍ରା—ହେଲେ ଆଜ କ'ଣ ? କ'ଣ ଆଜ······

ଲଳ୍ଟ—ବଡ଼ ହୋଇଗଲୁଣି······

ଚନ୍ଦ୍ରା—କଣ ହୋଇଗଲିଣି ମ ? କେତେ ବଡ ହୋଇଗଲିଣି ?

ଲଳ୍ଟ—ଏତେ ବଡ଼ (ହସି) କଣ ମନାସିଲୁ ? ଭଲ ଘର··· ଭଲ ବର···

ଚନ୍ଦ୍ରା—ନଅାଁ, ଗାଈ, ଚୂଲି······

ଲଳ୍ଟ—ନଅାଁ, ଗାଈ, ଚୂଲି ! ! ! ତା'ମାନେ···ଓ ବୁଝିଗଲି । ଏତେବଡ଼ କାମଟା ଯେତେବେଳେ ହେବ, ଅନେକ ଲୋକ ତ

ଖାଇବେ । ତେଣୁ ଭୋଜ ଘର ତିଆରି ପାଇଁ ବଡ଼ ବଡ଼ ଗାତ, ବଡ଼ ବଡ଼ ଚୂଲି ତିଆରି ହେବ । ତାପରେ ସେଥିରେ ନିଆଁ ଧରାହେବ । ତାପରେ ଖିରି, ପୁରି, ଆରିସା, କାକରା, କେତେକଣ ହେବ ନୁହେଁ ?

ଛନପୁ—ହୁଁ ! ! !

ଲଲଟ—କେତେ ରୋଷଣୀ ଜଳିବ, ପାଇକ ଖେଳିବେ, ସବାଖ-ପାଳିଙ୍କି ଆସିବ । ହେଲେ ସମ୍ବନ୍ଧଟା କେଉଁଠି ?

ଛନପୁ—ଲଲ ଭାଇ ! ତୁମେ ବଡ଼ ଅଲାଜୁକ ହୋଇଗଲଣି ।

ଲଲଟ—ହଁ, ମରମ କଥା କହିଲେ ତ, ସମସ୍ତେ ଅଲାଜୁକ ହୁଅନ୍ତି । ମଉସା ସବୁ ବ୍ୟବସ୍ଥା କରିଯାଇଛନ୍ତି ।

ଛନପୁ—ଏଁ, ବ୍ୟବସ୍ଥା କରି ଯାଇଛନ୍ତି—ଆଚ୍ଛା ଲଲଭାଇ କଥାଟା ଯଦି ସତ ହୁଏ, ତୁମେ ମୋତେ ଘୁଡ଼ ନିଶ୍ଚିନ୍ତରେ ରଖି ପାରିବ ?

ଲଲଟ—ତୁ ଯଦି ମୋତେ ଘୁଡ଼ ରଖି ପାରିବୁ, ମୁଁ ପାରିବିନି କାହିଁକି ?

ଛନପୁ—ଲଲଭାଇ ! ଆରେ ଘୁଡ଼ ମ କେହି ଯଦି ଦେଖେ ! !

ଲଲଟ—ଦେଖୁ !

ଛନପୁ—ତୁମେ ଲଲଭାଇ, ଆଜକାଲି ବଡ଼ ଅସଭ୍ୟ ହୋଇ ଗଲଣି ।

ଲଲଟ—ତାନ······

ଛନପୁ—ଆଜ ସାରାରାଜ୍ୟରେ ଘଡ଼କରେ ଘୋଡ଼ା ଛୁଟୁଛି । ଆଉ ତୁମେ ମୋ ପାଖରେ ବସି······

ଲଲାଟ—ଅଙ୍ଗ ତାମସା କରିବାରେ ବ୍ୟସ୍ତ, ଏଇଆ ତ—କିନ୍ତୁ କାହିଁକି ? କଣ ହୋଇଚି ?

ଚନ୍ଦ୍ରା—କଣ ହୋଇଚି ? ଯାହା ହେଇଚି, ହେଇଚି । ତୁମ ଆଗରେ କହି କରି ଲାଭ ନାହିଁ ।

ଲଲାଟ—ହଉ ! ନେହୁରା ହେଉଚି ଭଲ କୁହ !

ଚନ୍ଦ୍ରା—କ'ଣ ଆଉ ହବ ? ବର୍ଗୀମାନେ ପୁଣି ରାଜ୍ୟ ଆକ୍ରମଣ କରିବାକୁ ଆସିଛନ୍ତି ।

ଲଲାଟ—ବର୍ଗୀ ଆସିଲେ ବା ମୁସଲମାନ ଆସିଲେ, ମୋର କ'ଣ ଅଛି ।

ଚନ୍ଦ୍ରା—ହଁ, ସେ ତ ସତ କଥା ।

ଲଲାଟ—ତତେ ବା ତୋ ମୁର୍ତ୍ତିକୁ ତ ମୋଠୁ କେହି ଛଡ଼େଇ ନେଇ ପାରିବେନି !

ଚନ୍ଦ୍ରା—ତୁମେ ଲଲାଟରାଇ, ପାଇକ ଜାତିର କଳଙ୍କ । ଯେଉଁ ପାଇକ ପୁଅର ଫରିଖଣ୍ଡା ଉପରେ ଶତ୍ରୁର ଗ୍ରୀବା ଥରି ଉଠୁଥିଲା, ଯେଉଁ ପାଇକ ପୁଅର ଲଢ଼େଇ ଦେଖି ସାରା ଦୁନିଆ ଚମକି ଉଠୁଥିଲା, ସେଇ ପାଇକ ପୁଅର ଏତେ ଟିକିଏ ରକ୍ତ କ'ଣ ତୁମଠି ନାହିଁ ? ଧିକ୍ ତୁମର ପୁରୁଷପଣକୁ । ଧିକ୍ ତୁମର ନିହାଣ ମୁଗୁରକୁ ।

ଲଲାଟ—ଚାନ—

ଚନ୍ଦ୍ରା—ନା ଲଲାଟରାଇ, ଚନ୍ଦ୍ରା ପାଇକ ଝିଅ—ସେ ତାର ଦେବତାକୁ ପଣତକାନି ତଳେ ବାନ୍ଧି ରଖିବାକୁ ଚାହେନା-ତାର ମନର ମଣିଷକୁ ବଜ୍ରପୁଣି ବୀର ରୂପରେ ଦେଖିବାକୁ

ସ୍ବପ୍ନ । ଲଳଭାଇ ମୋ କଥା ଶୁଣି ଯଦି ତୁମେ ଦୁଃଖ ପାଇଥାଅ ମୋତେ କ୍ଷମା କରିବ । (ଯାଉଥିଲା)

ଲଳିତ—ଶୁଣ ତାନି । ଜାଣୁ ଏ ପାଇକ ସୁବାର ସମସ୍ତେ ମୋତେ ଭୀରୁ, କାପୁରୁଷ ବୋଲି କୁହନ୍ତି । ପାଇକ ପୁଅ ହୋଇ ମୁଁ କୁଆଡ଼େ ହୀନବୀର୍ଯ୍ୟ—ଦୁର୍ବଳ ! ମୁଁ କୁଆଡ଼େ ଖଣ୍ଡା ଧରି ଜାଣେନି, ଦିନରାତି ଖାଲି ନିହାଣ ମୁଗୁର ଧରି ଠକ୍ ଠକ୍ କରୁଥାଏ । ତେଣୁ ମୁଁ ସମସ୍ତଙ୍କର ଦୟାର ପାତ୍ର । ଏକଥା ଶୁଣିଲେ ସତରେ ଭାରି ହସ ଲାଗେ । ମୁଁ ଜାଣେ ମୁଁ କିଏ ? କିନ୍ତୁ, କିନ୍ତୁ ତାନି ତୁ, ତୁବି ମତେ କଣ......

ତାନିଯ୍ଵା—ହଁ, ମୁଁ...ମୁଁ ମଧ୍ୟ ଆଜି ଏ ପାଇକ ସୁବାର ସମସ୍ତଙ୍କ ସହ ସ୍ବର ମିଳାଇ କହୁଚି, ଲଳିତେନ୍ଦୁ ମାନଧାତା ଭୀରୁ, କାପୁରୁଷ, ସ୍ତୈଣ । ପାଇକ ପୁଅ ହୋଇ, ସେ କେବଳ ଜୀବନରେ ନିହାଣ ମୁଗୁର ଧରି ଶିଖିଚି ! ଢାଲ ତରବାରି ନୁହେଁ । ଶୁଣ ଲଳଭାଇ, ତୁମେ ଯଦି ହୃଦୟରେ ମତେ ଭଲ ପାଉଥାଅ, ମତେ ନେଇ ପ୍ରକୃତରେ ଘର ବାନ୍ଧିବାର ସ୍ବପ୍ନ ଦେଖୁଥାଅ, ତେବେ ତୁମ ହାତର ସିନ୍ଦୂର ଅପେକ୍ଷା, ଶତ୍ରୁ-ରକ୍ତରେ ମୋର ସୀମନ୍ତ ମଣ୍ଡିତ କରିପାରିଲେ ମୁଁ ଅଧିକ ଖୁସି ହେବି ।

ଲଳିତ—ତାନି ! ତୁ ଏଇଆ ଚାହୁଁ ? ନିହାଣ ମୁଗୁର ପରିବର୍ତ୍ତେ ତରବାରି ? ସୃଷ୍ଟିବଦଳରେ ଧ୍ୱଂସ ? ବେଶ୍ ତା ହେଲେ ତୋ ଲଳଭାଇ ତୋତେ କେବେ ନିରାଶ କରିବନି । ଯେଉଁଦିନ ଏଇ ହାତ ମୋର ଶତ୍ରୁ ରକ୍ତରେ ରଞ୍ଜିତ ହେବ, ସେଇଦିନ ମୁଁ ଫେରି ଆସିବି ତାନି, ସେଇ ରକ୍ତରେ ତୋର ସୀମନ୍ତ ମଣ୍ଡିତ କରିଦେବି । ( ପ୍ରସ୍ଥାନ )

ତନସ୍ଵା—ଲଳ୍ପଭାଇ ! ! ତୁମେ ତୁମର ତାଙ୍କୁ ଭୁଲ ବୁଝିବନ ତ, ତା ଉପରେ ଅଭିମାନ କରନି । ହେ ଜଗନ୍ନାଥ, ମା'ବୃନ୍ଦାବନ୍ଧ ମୋ ଲଳ୍ପଭାଇଙ୍କୁ ଭଲରେ ଭଲରେ ମୋ ପାଖକୁ ଫେରାଇ ଆଣ । ତାଙ୍କ ବିନା ଯେ ମୁଁ…

( ଦୀପ ଲଭ ଉଠିଲା, ତନସ୍ଵା ଚଲେଇ ଉଠିଲା, ପଶିଆସିଲେ ଶୁଭଦ୍ରା )

ଶୁଭଦ୍ରା—କଣ ହେଲା ତାନ ?

ତନସ୍ଵା—ଆଈ ! କଷ୍ଟ ହେଉନ ଆଈ, ମୋର କଷ୍ଟ ହେଉନ ।

ଶୁଭଦ୍ରା—ହୁଁ ତଙ୍ଗ । କଷ୍ଟ ହେଉନ ତ ଆଖିରୁ ଏତେ ଝର କାହିଁକ ମ । ଏତେ ଧକ କାହିଁକ ? କହ ମା, କଣ ହେଉଛ କହ । ଲଲ ଆସିଥିଲା, ଚାଲିଗଲା କାହିଁକ ?

ତନସ୍ଵା—ମୁଁ ତାଙ୍କୁ ଏଠୁ ତଡ଼ିଦେଇଛ ଆଈ । ମୁଁ ତାଙ୍କୁ ମରଣ ମୁହଁକୁ ଠେଲି ଦେଇଛ ।

ଶୁଭଦ୍ରା—ଛି ! ସେ କାଳ କଥା ମୁହଁରେ ଧରନ୍ତୁ ! କହ, କ'ଣ ହେଇଛ କହ ।

ତନସ୍ଵା—ମୋର ଭାର ଭୟ ହେଉଛ ଆଈ । ଅନେକ କଟୁ କଥା କହି ମୁଁ ତାଙ୍କୁ ବର୍ଗୀମାନଙ୍କ ସହିତ ଲଢ଼େଇ କରିବାକୁ ପଠେଇ ଦେଇଛ ।

ଶୁଭଦ୍ରା—ଆଲୋ ଡାଆଣି—ତୁ କ'ଣ କଲୁ । ପୁଅଟା ମୋର ଜୀବନରେ କେବେ ଖଣ୍ଡା ଧରି ଶିଖିନ ! ! ଏ ଦେଶରେ କ'ଣ ସମସ୍ତେ ଜନ୍ମ ହୋଇଚନ୍ତି ଖଣ୍ଡା ଧରିବା ପାଇଁ ? ଏଠି କ'ଣ କେହି କହାଣ ମୁଗୁର ଧରିବାର ଦରକାର ନାହିଁ ? ତୋର ଏତେ ଟିକିଏ ବୁଦ୍ଧି ଶୁଦ୍ଧି ନାହିଁ ? ଖାଲି ରାଗ କୋପ—ଆଉ

ଶେଷରେ ଗୋଟାଏ ଲୁହର ଝରଣା ଫିଟାଇ ଦେଲେ ତ ଗଲା ! ! ଆଲୋ କାନ୍ଦନା ପୋଡ଼ାମୁହିଁ କାନ୍ଦନା । କାନ୍ଦଲେ ଯେ ତେଣେ ମୋର ପୁଅର ଅମଙ୍ଗଳ ହେବ । ଆଲୋ ହୁଣ୍ଡି ! ପାଇକ ଝିଅ ତା ମନର ମଣିଷକୁ ଯୁଦ୍ଧକୁ ପଠେଇ ଦେଇ କେବେ ଆଖିରୁ ଲୁହ ଢାଳେନ । ଛାତିକୁ ପଥର କରି ଠାକୁରଙ୍କ ପାଖରେ ତାର ଶୁଭ ମନାସେ । ଦେଲୁ-ଦେଲୁ ମୋତେ ସେ ଶଙ୍ଖଟା ଦେଲୁ । ଆଲୋ ଦେ—ଦେଖେ ଏ ଟାକୁଆ ଗାଲରେ ଫୁଙ୍କି ହେଉଚ କ ନା । (ଫୁଙ୍କିଛୁ)

( ଅନ୍ଧାର )

## ପଞ୍ଚମ ଦୃଶ୍ୟ

[ ଜଙ୍ଗଲ ପଥ-ଦୂରରୁ କୋଳାହଳ-
ପ୍ରବେଶ କଲା ଅମର]

ଅମର—ଲାଗି ଯାଇଛି । ଜୋରସୋର ଲାଗି ଯାଇଛି । ହେଲେ ମୁଁ ଏଇନେ କରେଁ କ'ଣ ? ଏଇନେ ଘରକୁ ଫେରିଗଲେ ତ ମୁକ୍ତା ରଖେଇ ଦେବନି । ତା ଛଡ଼ା ଯଦି କାହାରି ହାତୁଡ଼େ ପଡ଼ି ଯାଏନା ତା ହେଲେ ଗଲା । ସବୁ ସରିଗଲା ! ଏତେ କଷ୍ଟ କରି ଲୁଚି ଲୁଚି ପଳାଇ ଆସିଲି । ଶେଷରେ ହିଁ ଶଙ୍କୁ ଭଳି ଏଇ ଅଧା ସ୍ୱର୍ଗରେ ରହି ମରିବାକୁ ପଡ଼ିବ । ସାବାଦନ ପେଟକୁ ଦାନା ଯାଇନି । ହେ ଚକାଡ଼ୋଳା ! ତୁମର ଏ ଭକ୍ତ ଯେ ଖାଇବାକୁ ନ ପାଇ ଶେଷରେ ମଲା । ଏଁ, ଏ କ'ଣ ? ଏ ଆଡ଼କୁ କିଏ ଜଣେ ଚକାଡ଼ୋଳା—? ଦାସ ତୁମର ଏଥର ମରିଗଲା ।

( ଗଛକୁ ଚଢ଼ି ଚକାଡ଼ୋଳା
ଚକାଡ଼ୋଳା ହେଉଥାଏ )

ଶୁଭ—(ପ୍ରବେଶି) ଚକାଡ଼ୋଳା ? ଏଁ, କିଏ ସେ ଗଛ ଉପରେ ?

ଅମର—ନା—କେହି ନୁହେଁ ।

ଶୁଭ—କେହି ନାହିଁ ? ଶୀଘ୍ର ଓହ୍ଲାଇ ଆ କହୁଛି । ନ ହେଲେ ଏକା ଚୋଟକେ ଏ ଗଛ ସଙ୍ଗରେ ତୋ ମୁଣ୍ଡ ଗଣ୍ଡି ଅଲଗା କରିଦେବି ।

ଅମର—ଆଜ୍ଞା ନା ଚକାଡ଼ୋଳା, ଏଇ ଓହ୍ଲାଇ ଗଲି ।

ଶୁଭ—ଆରେ ଶୀଘ୍ର ଓହ୍ଲା ।

ଅମର—ଓହ୍ଲେଇବ ଗଲି ! ପାରୁନି ଚକାଡ଼ୋଳା···ହାତ ଗୋଡ଼ ଥରୁଚି···ଆଖିକି କିଛି ଦେଖା ଯାଉନି ।

ଶୁଭ—ଥଙ୍କା—ମୋ ସହିତ ଥଟ୍ଟା କରୁଚୁ ? ଦେଖିବୁ ଏଇନେ ? (ଅମର ଡ଼େଇଁ ତଳକୁ ଓହ୍ଲେଇଲା) ଏ—ତୁ କିଏ ? ବଦମାସ୍ କଣ ତୋ ନାଁ ? କହ ତୋ ନାଁ କଣ ? କହିବୁନି ତାହା-ହେଲେ ? ଛଦ୍ମବେଶୀ ସଇତାନ (ମୁହଁ ଦେଖି) କିଏ ଅମର ? ତୁ ଏଠି ଏ ବେଶରେ ? ଆରେ ଆଖି ଖୋଲ ।

ଅମର—ଖୋଲିବି ଚକାଡ଼ୋଳା, ଆଗ ତୁମ ନାମଟି କଣ କହିଲ ?

ଶୁଭ—ଆରେ ମୁଁ ପରା ତୋ ଶୁଭଭାଇ ।

ଅମର—ଓଃ ଶୁଭଭାଇ ( ଆଖି ଖୋଲି ) ତୁମେ—ଯେମିତି ମୋ ଉପରେ ଗର୍ଜନ ତର୍ଜନ କଲ ନା—ମୁଁ ତ ଭାବିଲି···

ଶୁଭ—କଣ ଭାବିଲୁ ?

ଅମର—ଛି ! ଏମିତି କରନ୍ତି । ମୁଁ ଯେ ଏତେ ଉପରୁ ଖସିପଡ଼ିଲି । ମୋ ଗୋଡ଼ଟା ତ ଯାଇଚି, ଆଉ ଯଦି କିଛି ହୋଇଯାଇ-ଥାନ୍ତା······

ଶୁଭ—ଆଉ ଯଦି କିଛି ହୋଇଥାନ୍ତା, ସେତେବେଳକୁ ଦେଖା-ଯାଇଥାନ୍ତା । ଏଇନେ ସେମିତି କିଛି ହୋଇନି ତ ? ହୁଁ ଶୁଣ, ତୁ ଗୋଟାଏ କାମ କର ।

ଅମର—କଣ କୁହ ଶୁଭଭାଇ ?

ଶୁଭ—ଯୁଦ୍ଧରୁ ତ ଲୁଚି କରି ଘରକୁ ପଳାଇ ଆସିଛୁଁ ।

ଅମର—ହଁ···(ଜିଭ କାମୁଡ଼ି) ନା ନା ଲୁଚି କରି ପଳାଇ ଆସିବି କାହିଁକି ? ସମସ୍ତଙ୍କୁ କହିକରି ଆସିଛି ।

ଶୁଭ—ଭଲ କରୁଚୁ । ବୀର ପୁରୁଷର କାମ କରୁଚୁ । ଏଇନେ ସିଧା ପୋଡ଼ାଗଡ଼କୁ ଫେରଯା ।

ଅମର—କାହିଁକି ?

ଶୁଭ—ଭାସ୍କର ପଣ୍ଡିତ କାଲି ରାତିରେ ଛଦ୍ମବେଶରେ ମୋଗଲ ଶିବିରକୁ ଯାଇଚ । ଆମେ ସମସ୍ତେ ଏ ଆଡ଼େ ଯୁଦ୍ଧରେ ବ୍ୟସ୍ତ । ଗଡ଼ଯାକ ଖାଲି ମାଇକିନିଆ ଆଉ ଛୁଆ । ମୋଗଲ ଶିବିରରୁ ଫେରିବା ପଥରେ ଯଦି ଭାସ୍କର ପଣ୍ଡିତ ମଥାରେ କିଛି ଦୁର୍ବୁଦ୍ଧି ଘୁସେ, ତା ହେଲେ ସେ ଆମ ଗଡ଼ଆଡ଼େ ପଶିଯାଇ ଗୋଟେ କିଛି ଅନର୍ଥ ସୃଷ୍ଟି କରିପାରେ । ତେଣୁ ମୋ ମତରେ ତୁ ଗୋଟାଏ କାମ କର । ଏଇନେ ସିଧା ପୋଡ଼ାଗଡ଼କୁ ଯାଇ, ସବୁ ନାରୀମାନଙ୍କୁ ସତର୍କ କରାଇ ଦେ । ଦରକାର ପଡ଼ିଲେ, ସେମାନେ ଯେପରି ଏକଜୁଟ ହୋଇ ଭାସ୍କର ପଣ୍ଡିତକୁ ସମୁଚିତ ଶିକ୍ଷା ଦେଇ ପାରନ୍ତି ।

ଅମର—ଠିକ୍ କହୁଚ ଶୁଭଭାଇ । ମୁଁ ତାହେଲେ ଚାଲିଲି ।

ଶୁଭ—ହଁ, ଶୀଘ୍ର ଶୀଘ୍ର ଯା । ମୁଁ ସେଇ ଖବରଟା ଦେବାକୁ ଗଡ଼କୁ ଯାଉଥିଲି । ଭାଗ୍ୟକୁ ତୋର ଦେଖା ହୋଇଗଲା । ମୁଁ ଯାଏଁ —ଜେଣେ ପ୍ରବଳ ଯୁଦ୍ଧ ଚାଲିଚି । ସର୍ଦ୍ଦାର ଲଲାଟକୁ ନେଇ ଏକା ଏକା କଣ ଯେ କରୁଥିବେ···? (ପ୍ରସ୍ଥାନ)

ଅମର—ମହା ମୁସ୍କିଲରେ ପଡ଼ିଲି ରେ ବାବା, ଯୁଆଡ଼େ ଗଲେ ଖାଲି ଯୁଦ୍ଧ !

ଭାସ୍କର—(ପ୍ରବେଶି) ଏଁ, ତୁ କିଏ ?

ଅମର—(ଭୟରେ) ମୁଁ···ମୁଁ···

ଭାସ୍କର—କହ ତୁ କିଏ ? କୁଆଡ଼େ ଯାଉଚୁ ?

ଅମର—ଆଜ୍ଞା—ଆ-ଜ୍ଞା···।

ଭାସ୍କର—ପାଇକ ସୈନ୍ୟ ବୋଲି ମନେ ହୁଏ । କହ ତୁ କିଏ ? ନ ହେଲେ···। ଏଇ ତରବାରିରେ···

ଅମର—ଆହା—ହା—କହୁଚି-କହୁଚି- ସବୁକଥା କହୁଛି—ତଳେ ମାତ୍ର ଛାଡ଼ିଦିଅ ।

ଭାସ୍କର—ଚଞ୍ଚଳ କହ । ବିଳମ୍ବ କର ନାହିଁ ।

ଅମର—ଆଦୌ ବିଳମ୍ବ କରିବି ନାହିଁ ଆଜ୍ଞା, ଜମାରୁ ବିଳମ୍ବ କରିବି ନାହିଁ ।

ଭାସ୍କର—ତା ହେଲେ ଶୀଘ୍ର କହ ।

ଅମର—ଆଜ୍ଞା ଯେତେ ଶୀଘ୍ର ପାରିବି କହିବି ।

ଭାସ୍କର—ଚୁପ୍ ।

ଅମର—ଆଜ୍ଞା, ଚୁପ୍ ରହୁଚି, କିଛି କହିବି ନାହିଁ ।

ଭାସ୍କର—(ତରବାରି ଉଠାଇ)

ଅମର—ମୋ ଘର ଭଦ୍ରକ ପାଇକ ବସ୍ତିରେ । ମୋର ନାଁ ଶ୍ରୀ ଶ୍ରୀ ଶ୍ରୀଯୁକ୍ତ ଅମରେନ୍ଦ୍ର ମାନଧାତା । ମୋ ବାପାଙ୍କ ନାଁ···

ଭାସ୍କର—କହ, କେଉଁ ଅଭିପ୍ରାୟରେ ତୁ ଏ ଅଞ୍ଚଳରେ ବିଚରଣ କରୁଛୁ ?

ଅମର—ଆଜ୍ଞା, ବିଚରଣ କୌଣସି ମନ୍ଦ ଅଭିପ୍ରାୟରେ ନୁହେଁ । ଉଦ୍ଦେଶ୍ୟ ଅତି ମହତ୍—ଅତି ପ୍ରଶସ୍ତ ।

ଭାସ୍କର—ବାଚାଳତା ଛାଡ଼, ତୁରନ୍ତ ଉଦ୍ଦେଶ୍ୟ ବ୍ୟକ୍ତ କର ।

ଅମର—ବାଚାଳତା ଛାଡ଼ି ତୁରନ୍ତ ବ୍ୟକ୍ତ କରୁଛି । ଉଦ୍ଦେଶ୍ୟ ସଂଗ୍ରାମ, କାମନା 'ଶତ୍ରୁ ଜୟ—'

ଭାସ୍କର—ମୂର୍ଖ ! ଭାସ୍କର ପଣ୍ଡିତ ସହିତ ସଂଗ୍ରାମ କରିବାକୁ ଚାହୁଁ ?

ଅମର—ଆଃ—ଆଃ—ଆପଣ ଭାସ୍କର ପଣ୍ଡିତ ? ଜଗନ୍ନାଥ ଦୁର୍ଗ ଦଖଲ୍ କରନେଇ ଥିଲେ ? ସେ ଦୁଗରେ ଖାଣ୍ଡଣ ଯୁଦ୍ଧ ଚାଲିଛି ।

ଭାସ୍କର—ଜଗନ୍ନାଥ ଦୁର୍ଗରେ ଘୋଷଣ ଯୁଦ୍ଧ ଚାଲିଛି ?

ଅମର—ମୁଁ ଯୁଦ୍ଧକୁ ଯାଇଥିଲି । ନା—ନା—ମୋତେ ଧରି ନେଇଯାଇ ଥିଲେ । ଆରେ-ବାପରେ ସେ ଯୁଦ୍ଧ ? ସେ ଯୁଦ୍ଧ ଦେଖି ମୋ ଛାତି ତ ଖାଲି ଉଠିଲା ଆଉ ପଡ଼ିଲା । ଗୋଡ଼ ହାତ ମୋର କଦଳୀ ବାହୁଙ୍ଗା ପରି ଥରିଲା । ସେଥିପାଇଁ ଏ ଢାଲ ତରବାରିକୁ କାନରେ ଗୁଡ଼ାଇ ପ୍ରସ୍ଥାନ କରୁଛି !

ଭାସ୍କର—ଆଚ୍ଛା ବୁଝିଲି । ସେ ଆଡ଼େ ମୁଁ ମୁସଲମାନ ଶିବିରରେ ଗୁପ୍ତରେ ଖବର ନେବା ସମୟରେ ସେମାନେ ଏଆଡ଼େ ଦୁର୍ଗ ଆକ୍ରମଣର ସୁଯୋଗ ନେଇଛନ୍ତି । ବେଶ୍ ଠିକ୍ ଅଛି, ତଥାପି ସେମାନଙ୍କୁ ସମୁଚିତ ଶିକ୍ଷା ଦେବି । (ପ୍ରସ୍ଥାନ)

ଅମର—ଆରେ ବାପା ! ପୁଣି ମରୁ ମରୁ ବଞ୍ଚିଗଲି । ବାଘ ହାବୁଡ଼ରେ ପଡ଼ିଯାଇଥିଲି ତ ! ! ମାଁ ବାସୁଳି ! ତୁ ମୋ ପ୍ରାଣ ରଖିଲୁ, ଏ ପ୍ରାଣଟା ଥିବା ଯାଏ କେତେଥର ଆଉ ମରିବି ଭଲା, ଜୟ ମା ବାସୁଳି !

( ଅନ୍ଧାର )

## ଷଷ୍ଠ ଦୃଶ୍ୟ

[ ଶିବିର ଅନ୍ତରାଳରୁ କୋଳାହଳ-
ଶୁଣିଆସିଲେ ସିରାଜ ଓ ଇମାମ୍ ]

ସିରାଜ—ଇମାମ୍, ଏ କୋଳାହଳ କାହିଁକି ? କାହାର ଏ କୋଳାହଳ ? ବର୍ଗିମାନଙ୍କର ?

ଇମାମ୍—ହଁ, ଶାହାଯାଦା । ଖୁବ୍ ପାଟି ଭୁଣ୍ଡ ଶୁଣାଯାଉଛି । ବୋଧହୁଏ ଆକ୍ରମଣ ।

ସିରାଜ—(ଦୂରବୀକ୍ଷଣ ଲଗାଇ) ଇମାମ୍, ସୈନ୍ୟମାନଙ୍କୁ ଖୁବ ସଜାଗ ରହିବାକୁ ।

ଇମାମ୍—ଜି ! ହଁ । (ଯାଉଥିଲା)

ସିରାଜ—ଶୁଣ୍, କିଛି ଅଶ୍ୱାରୋହୀ ଚତୁର୍ଦ୍ଦିଗକୁ ଛୁଟାଇଦିଅ । ଜଣାଇ ଦିଅ, ସ୍ୱୟଂ ଶାହାଯାଦା ସିରାଜ୍ ଆଜ ଯୁଦ୍ଧ ପାଇଁ ପ୍ରସ୍ତୁତ ଅଛନ୍ତି ।

ଇମାମ—ଯାଉଛି ଶାହାଯାଦା ।

ସିରାଜ—ହଁ, ଶୀଘ୍ର ଛୁଟି ଯାଓ । ମୁର୍ଶିଦାବାଦରୁ ପ୍ରାୟ ଦୁଇଶହ କ୍ରୋଶ ଅତିକ୍ରମ କରି ଆମ୍ଭେ ଆସିଲୁଣି । ଆମର ସୈନ୍ୟମାନେ କେତେ ନଦ ନଦୀ, ପାହାଡ଼ ପର୍ବତ ଅତିକ୍ରମ କରି ଆସିଛନ୍ତି । ଖୋଦାଙ୍କ ମେହେରବାନିରୁ ଏ ପର୍ଯ୍ୟନ୍ତ ପଥ ମଧ୍ୟରେ କୌଣସି ଦୁର୍ଘଟଣା ଘଟି ନାହିଁ କିମ୍ବା ଆମ୍ଭମାନଙ୍କୁ କୌଣସି ଆକ୍ରମଣର ସମ୍ମୁଖୀନ ହେବାକୁ ପଡ଼ିନାହିଁ । କିନ୍ତୁ ଏ ବର୍ଗିମାନଙ୍କୁ ବିଶ୍ୱାସ ନାହିଁ । ସମ୍ମୁଖ ଯୁଦ୍ଧକୁ ନ ଆସି, ସେମାନେ ପଶ୍ଚାତ୍

ଆକ୍ରମଣରେ ଧୂରନ୍ଧର । ଏଇ ଦୂରରେ ଧୂଳି ଉଡ଼ାଇ, ଏଆଡ଼କୁ ଆମର କେତୋଟି ଅଶ୍ୱାରୋହୀ ଛୁଟି ଆସୁଛନ୍ତି ।

(ଦୂରବୀକ୍ଷଣ ଇମାମକୁ ଦେଲେ) ।

ଇମାମ—(ଦେଖି) ଶାହାଯାଦା ! ବିପଦର କୌଣସି ସୂଚନା ନାହିଁ । ସ୍ୱୟଂ ସେନାପତି ଜହରତ୍ ଖାଁ ସହର୍ଷେ ଫେରି ଆସୁଛନ୍ତି ।

ସିରାଜ—ବୋଧହୁଏ କୌଣସି ସୁସମ୍ବାଦ ନେଇ ଜହରତ୍ ଫେରି-ଆସୁଛନ୍ତି । ତାଙ୍କୁ ଭିତରକୁ ଆସିବାକୁ କୁହ ।

ଇମାମ୍—ହଜୁର ! (ପ୍ରସ୍ଥାନ)

ଜହରତ୍—(ପ୍ରବେଶି) ସଲାମ ଶାହାଯାଦା ।

ସିରାଜ—ସମସ୍ତ କୁଶଳ ତ ?

ଜହରତ୍—ଶାହାଯାଦା ସିରାଜଦୌଲାଙ୍କ ଉପସ୍ଥିତିରେ, ଆମର କୌଣସି ବିପତ୍ତିର ସୂଚନା ନାହିଁ । ଆପଣଙ୍କ ଉପସ୍ଥିତିର ଖବର ପାଇ, ପାଇକ ସେନା ଉତ୍ସାହରେ ମାତି ଉଠିଛନ୍ତି । ସେମାନେ ଜଗନ୍ନାଥ ଦୁର୍ଗ ଅଧିକାର କରି ନେଇଛନ୍ତି ।

ସିରାଜ—ଜଗନ୍ନାଥ ଦୁର୍ଗ ଅଧିକାର କରି ନେଇଛନ୍ତି ? ସାବାସ୍, ସାବାସ୍ ପାଇକ ସେନା । ବର୍ଗିମାନେ ଆତଙ୍କିତ ନିଶ୍ଚୟ ସେନାପତି ? ? ତୁମର ଚମତ୍କାର ଯୋଜନା ପାଇଁ ମୁଁ ତୁମକୁ ଇନାମ ଦେବି, ଆଚ୍ଛା । କିଏ, କିଏ ସେହି ପାଇକ ଯୋଦ୍ଧା— ନେଇ ଆସି ପାରିଲନି ତାଙ୍କୁ ? ଏଭଳି ଏକ ବୀର ଜାତିକୁ ଆମର ବନ୍ଧୁତ୍ୱ ରଜ୍ଜୁରେ ବରାବର ବାନ୍ଧି ରଖିବାକୁ ହେବ । ମୁଁ ଦେଖୁଚି, ସେଇମାନେ ହିଁ କେବଳ ବର୍ଗୀ ଆକ୍ରମଣର ମୁକାବିଲା କରିବାକୁ ସମର୍ଥ ।

ଜହରତ୍—ନବାବ୍ ସାହେବଙ୍କ ମେହେରବାନରୁ ସେ କାମ କରିବାକୁ ମୁଁ ଛୁଡ଼ ନାହିଁ, ଶାହାଯାଦା । ସେମାନଙ୍କୁ ବାହାରେ ଅପେକ୍ଷା କରିବାକୁ କହି ଆସିଛି ।

ସିରଜ—ବାହାରେ ଅପେକ୍ଷା କରିବାକୁ କହି ଆସିଚ ? କାହିଁକି ? ସେମାନଙ୍କୁ ସସମ୍ମାନେ ଭିତରକୁ ନେଇ ଆସି ପାରିଲ ନାହିଁ ?

ଜହରତ୍—(ଡାକିଲେ) ସିପାହି ।

(ପ୍ରବେଶ କଲେ ଲଲାଟ, ଶତ୍ରୁଶଲ୍ୟ)

ଲଲାଟ-ଶତ୍ରୁ—ଅଭିବାଦନ ଗ୍ରହଣ କରନ୍ତୁ ଶାହାଯାଦା !

ଜହରତ—ଶାହାଯାଦା ! ଏହି ଦୁଇ ପାଇକବୀରଙ୍କ ନେତୃତ୍ୱରେ ଆଜି ଜଗନ୍ନାଥ ଦୁର୍ଗରେ ଆମର ବିଜୟ ବୈଜୟନ୍ତୀ ଉଡ଼ି ପାରିଚି । ପରିଚୟ କରାଇ ଦିଏଁ ଶାହାଯାଦା ! ଏ ହେଉଛନ୍ତି ପାଇକ ସର୍ଦ୍ଦାର ଶତ୍ରୁଶଲ୍ୟ ଏବଂ ଏ ହେଉଛନ୍ତି, ପାଇକବୀର ଲଲାଟେନ୍ଦୁ ଆଉ ଏ ହେଉଛନ୍ତି, ନବାବ ଆଲିବର୍ଦ୍ଦି ଖାଁଙ୍କର ନାତି ଶାହାଯାଦା ସିରଜଉଦ୍ଦୌଲା ମୁର୍ଶିଦାବାଦର ଭାବୀ ନବାବ ।

ଶତ୍ରୁ—ଶାହାଯାଦା ! ନବାବ୍ ଆଲିବର୍ଦ୍ଦିଖାଁଙ୍କର ଉପଯୁକ୍ତ ଦାୟାଦ ଶାହାଯାଦାଙ୍କ ପାଖରେ ଆମେ ଚିର କୃତଜ୍ଞ ।

ସିରଜ—ନା ନା, ବରଂ ମୁଁ ଆଜି ଆପଣମାନଙ୍କ ନିକଟରେ କୃତଜ୍ଞ । ଆପଣମାନଙ୍କ ସାହାଯ୍ୟ ପାଇ, ମୁଁ ଯେ, ଆପଣମାନଙ୍କୁ କି ଇନାମ ଦେବି, ଚିନ୍ତା କରିପାରୁନି । ତୁମେ ଯୁବକ, ଏତେ ଅଳ୍ପ ବୟସରୁ ଏ ଯେଉଁ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଚ— ।

ଶମ୍ଭୁ—ଜଗନ୍ନାଥ ଦୁର୍ଗ ବର୍ଗୀ ହାତରୁ ଛଡ଼ାଇ ଆଣିବା ଏହି ଯୁବକର ଅପୂର୍ବ ରଣକୌଶଳ ଯୋଗୁ ହିଁ ସମ୍ଭବ ହୋଇଛି । ୬୫ ବର୍ଷର ଏ ବୃଦ୍ଧ ପ୍ରାଣରେ ଏହି ଯୁବକର ରଣ-କୌଶଳ ଆଣି ଦେଇଥିଲା ଅପୂର୍ବ ଉତ୍ସାହ । ଉନ୍ମାଦନା ।

ସିରାଜ—ଲଲଟେନ୍ଦୁ ! ତୁମେ ଆଜ କ'ଣ ଚାହଁ ଶାହାଯାଦା ସିରାଜଙ୍କ ଠାରୁ ?

ଲଲାଟ—ଓଡ଼ିଆ ପାଇକ ଅନ୍ୟ କିଛି ଚାହେଁନା ଶାହାଯାଦା ! ଚାହେଁ କେବଳ ଯଥୋଚିତ ସମ୍ମାନ ଓ ତାହାର ମର୍ଯ୍ୟାଦା । ଯେତେଦିନ ପର୍ଯ୍ୟନ୍ତ ସେ ତାର ନ୍ୟାଯ୍ୟ ମର୍ଯ୍ୟାଦାରୁ ବଞ୍ଚିତ ନ ହୋଇଛି ସାହାଁପନ୍ନାଙ୍କର ଆହ୍ୱାନ ମାତ୍ରେ ସେ ତାର ଜୀବନକୁ ଉତ୍ସର୍ଗ କରି ଛୁଟି ଆସିବ, ମରଣର ସମ୍ମୁଖୀନ ହେବାକୁ । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ଶମ୍ଭୁ—ଶାହାଯାଦା ! ଏ ଯୁବକକୁ ଆଶୀର୍ବାଦ କରନ୍ତୁ । ଆପଣଙ୍କ ସାମ୍ରାଜ୍ୟ ବିସ୍ତାରରେ ସେ ଯେପରି ଆପଣଙ୍କ ପ୍ରଧାନ ସହକର୍ମୀ ଭାବେ କାର୍ଯ୍ୟ କରିପାରେ ।

ସିରାଜ—ସର୍ଦ୍ଦାର ଶମ୍ଭୁଶଲ୍ୟ, ମୁଁ ଆପଣଙ୍କ ଆନ୍ତରିକତାରେ ମୁଗ୍ଧ ହେଲି । (ତରବାରି ଦେଇ) ଲଲଟେନ୍ଦୁ ଧର ଏଇ ତରବାରି । ଆଜଠୁଁ ତୁମ ଉପରେ ଅର୍ପିତ ହେଲା ଏ ଦୁର୍ଗର ଦାୟିତ୍ୱ ।

ସିରାଜ—ତୁମେ ହିଁ ରହିବ ଆମ ସାମ୍ରାଜ୍ୟର ଏକ ଶକ୍ତିସ୍ତମ୍ଭ ରୂପେ ଆଉ ପାଇକ ସର୍ଦ୍ଦାର ଶମ୍ଭୁଶଲ୍ୟ—ତୁମେ ମୋର ଚିରଦିନ ବନ୍ଧୁତାପାଶରେ ଆବଦ୍ଧ ହୋଇ ରହିଲ ।

( ଶମ୍ଭୁଶଲ୍ୟଙ୍କ ଗଳାରେ ହାରମାଳ ଦେଇ )

ଶମ୍ଭୁ, ଲଲାଟ ଜନତା } —ଜୟ ଶାହାଯାଦା ସିରାଜଉଦ୍ଦୌଲାଙ୍କର ଜୟ—

( ଅନ୍ଧାର )

# ସପ୍ତମ ଦୃଶ୍ୟ

[ ଜଙ୍ଗଲ ପଥ-ଭାସ୍କର ପଣ୍ଡିତ
ଓ ଶମ୍ଭୁରାଓ ମଧ୍ୟରେ ମନ୍ତ୍ରଣା ]

ଭାସ୍କର—କି ବୀରତ୍ୱ ଏଇ ଓଡ଼ିଆ ପାଇକର ! ସେଇ ସାମାନ୍ୟ ଯୁବକର ଆକ୍ରମଣକୁ, ଭାସ୍କର ପଣ୍ଡିତ ଭଳି ଶକ୍ତିଶାଳୀ ଯୋଦ୍ଧା ପ୍ରତିରୋଧ କରିବାକୁ ଅକ୍ଷମ ହେଲା ? କିଏ ସେହି ଯୁବକ ? କି ଅଦ୍ଭୁତ ତାର ଅସ୍ତ୍ର ଚାଳନାର କୌଶଳ ? ଆମର ସମସ୍ତ ଶକ୍ତି ତା ନିକଟରେ ପ୍ରତିହତ ?

ଶମ୍ଭୁ—ଆପଣଙ୍କର ଏଭଳି ବିଚଳିତ ହେବା ଠିକ୍ ନୁହେଁ । ବିପଦରେ ଧୈର୍ଯ୍ୟ ଅବଲମ୍ବନ କରିବା ପାଇଁ ଆମର ଗୁରୁ ଶିବାଜୀ ସବୁବେଳେ ଆମକୁ ପରାମର୍ଶ ଦେଇ ଆସିଚନ୍ତି । କି ଅସୀମ ଧୈର୍ଯ୍ୟ ନ ଥିଲା ତାଙ୍କର ! ! ଆମେ ଏତେ ଭାଙ୍ଗି ପଡ଼ିଲେ ଚଳିବ ! ଆମକୁ ଛଳେ ବଳେ କୌଶଳେ ଆଗେଇବାକୁ ହେବ । ଆମର କର୍ତ୍ତବ୍ୟ ଭୁଲିଗଲେ ଚଳିବ ନାହିଁ ।

ଭାସ୍କର—ଠିକ୍ ମନେ ପକେଇଚ ଶମ୍ଭୁରାଓ । ଆମର କର୍ତ୍ତବ୍ୟ ଭୁଲିଗଲେ ଚଳିବ ନାହିଁ । ସେହି ରୁକ୍ଷ ପାହାଡ଼ିଆ ଜନ୍ମ-ଭୂମିର ହଜାର ହଜାର ସନ୍ତାନଙ୍କୁ ଆମକୁ ଖାଦ୍ୟ ଯୋଗାଇ-ବାକୁ ହେବ । ଛଳେ ବଳେ କୌଶଳେ, ଶତ୍ରୁ କବଳରୁ ଆମକୁ ଛଡ଼େଇ ଆଣିବାକୁ ହେବ—ଧନ, ରତ୍ନ, ଖାଦ୍ୟ ସାମଗ୍ରୀ ଆଉ ସବୁ ଶେଷରେ ସାମ୍ରାଜ୍ୟ ।

ଶମ୍ଭୁ—କିନ୍ତୁ ବର୍ତ୍ତମାନ ଆମର କାର୍ଯ୍ୟକ୍ରମ କଣ ?

ଭାସ୍କର—କାର୍ଯ୍ୟକ୍ରମ ହିଁ, ଖବର ଦିଅ, ଆମର ବାହିନୀକୁ । ଅଳ୍ପ ଘଡ଼ି ମଧ୍ୟରେ ପାଇକ ଏବଂ ମୁସଲମାନ ସେନାଙ୍କୁ ଯେ କୌଣସି ମତେ ଶେଷ କରିବାକୁ ହେବ ।

ଶମ୍ଭୁ—କଣ ପାଗଳ ହେଲେ ଆପଣ ? ଏ ସବୁ ଆପଣ କଣ କହୁଛନ୍ତି ?

ଭାସ୍କର—ଭାସ୍କର ପଣ୍ଡିତ କେବେ ମିଥ୍ୟା ପ୍ରଳାପ କରେ ନା ଶମ୍ଭୁରାଓ ! ସେ ଯାହା କହେ କାର୍ଯ୍ୟତଃ ତାହା ହିଁ ପରିଣତ କରେ । ଶୁଣ ଶମ୍ଭୁରାଓ ! ଆମେ ଯେଉଁ ପାହାଡ଼ ଉପରେ ଛିଡ଼ା ହୋଇଛେ, ଏହାର ପାଦଦେଶରୁ ଉତ୍ତର ଆଡ଼କୁ ଲକ୍ଷ୍ୟ କରିଛ ? ଅଦୂରରେ ମୁସଲମାନ ବାହିନୀ ଆନନ୍ଦ ଉଲ୍ଲାସରେ ମାତିଛନ୍ତି । ପାହାଡ଼ର ଏପଟେ ବିରାଟ ଜଳାଶୟ ।

ଶମ୍ଭୁ—ଆପଣ କଣ କହୁଛନ୍ତି ମୁଁ ବୁଝିପାରୁ ନାହିଁ ?

ଭାସ୍କର—ମୁଁ କହୁଚି ଏଇ ଜଳାଶୟ । ଆଜ୍ଞା ଶମ୍ଭୁରାଓ ଏହି ଜଳାଶୟର ବନ୍ଧଟାକୁ ଯଦି — (ହସିଲେ)

ଶମ୍ଭୁ—ଚମତ୍କାର ଯୋଜନା ।

ଭାସ୍କର—କେବଳ ସେତିକରେ କାର୍ଯ୍ୟ ଶେଷ ହେବ ନାହିଁ ।

ଶମ୍ଭୁ—ତାହେଲେ ?

ଭାସ୍କର—ତା'ପରେ ଲୁଣ୍ଠନ ଲୁଟତରାଜ, ଖଣ୍ଡ ଆକ୍ରମଣ । ଏମାନେ ଏକତ୍ରିତ ହେବା ପୂର୍ବରୁ ଗୋଟି ଗୋଟି କରି ଏମାନଙ୍କୁ ନିର୍ମମ ଭାବେ ହତ୍ୟା କରିବାକୁ ପଡ଼ିବ । ଏମାନଙ୍କର ଗାଁ ଗଣ୍ଡା ଜାଳି ପୋଡ଼ି ପାଉଁଶ କରିବାକୁ ହେବ । ତାପରେ ଯାଇ ଭାସ୍କର ପଣ୍ଡିତ ଶାନ୍ତ ହେବ । ତାର ଅନ୍ତରର ଜ୍ୱାଳା ପ୍ରଶମିତ ହେବ ।

ଶମ୍ଭୁ—ମୁଁ କଳ୍ପନା କରିପାରୁ ନାହିଁ ।

ଭାସ୍କର—କଳ୍ପନାରେ ଅନେକ କଥା କରାଯାଇ ପାରେ ଶମ୍ଭୁରାଓ ।
ଅସମ୍ଭବ କାର୍ଯ୍ୟ ମଧ୍ୟ କଳ୍ପନାରେ ସୁନ୍ଦର ରୂପରେଖ
ନେଇଥାଏ । ଛାଡ଼ ସେ-ସବୁ, ଆମର ଏ ଯୋଜନା ଉପରେ
କାର୍ଯ୍ୟକାରୀ ହେବ, ସେଥିପାଇଁ ଆମକୁ ଅତିଶୀଘ୍ର ଚେଷ୍ଟା
କରିବାକୁ ହେବ ।

ଶମ୍ଭୁ—ପରମେଶ୍ୱରଙ୍କ କରୁଣା ହେଲେ ଆମର ସମସ୍ତ ଆଶା ପୂର୍ଣ୍ଣ
ହେବ ।

ଭାସ୍କର—ଆମେ ମରହଟ୍ଟା ! ସଂଗ୍ରାମ ପାଇଁ ଆମର ଜନ୍ମ ! ଆମେ
ବର୍ଗୀ, ଆମେ ଅତ୍ୟାଚାରୀ । ଧ୍ୱଂସ, ଲୁଣ୍ଠତରାଜ ଆମର କାମ୍ୟ ।
(ହଠାତ୍ ବଜ୍ରର ସୂଚନା) ଶମ୍ଭୁରାଓ ବଡ଼ ଝଡ଼ର ସୂଚନା
ମିଳୁଛି । ହୁଏତ ଆଜ ଠିକ୍ ଏ ପରେ ଏ ରାତି ହେବ ଆମ
ଶତ୍ରୁପକ୍ଷ ଲାଗି ଏକ କାଳରାତ୍ରି । ଏ ପ୍ରକୃତିର ତାଣ୍ଡବଲୀଳା
ନୁହେଁ ଶମ୍ଭୁରାଓ ! ଏ ହେଉଛି ମରହଟ୍ଟା ତିଳକ ଛତ୍ରପତି
ଶିବାଜୀଙ୍କର ଅତୃପ୍ତ ଆତ୍ମାର ହାହାକାର । ତା କବଳରୁ
କେହି ରକ୍ଷା ପାଇବେନ । ତୁମେ ଯାଅ—ଏହି ସୁଯୋଗରେ
ଆନନ୍ଦର ବନ୍ଧନଟାକୁ କାଟିଦିଅ—ଯାଅ— (ଶମ୍ଭୁ ପ୍ରସ୍ଥାନ)

( ଅନ୍ଧାର )

## ଅଷ୍ଟମ ଦୃଶ୍ୟ

[ ଶତ୍ରୁଶଲ୍ୟଙ୍କ ଘର-ସିଡ଼ିଜ ଓଦା ଅବସ୍ଥାରେ ପିଣ୍ଡା ଉପରେ ଶୋଇଥାନ୍ତି-ଚନ୍ଦ୍ରା ଦେହ ମୁଣ୍ଡ ପୋଛୁ ଦେଉଛି, ପିଲାମାନେ ଦେଖୁଥାନ୍ତି-ଅମର ପିଲାମାନଙ୍କୁ ତଡ଼ୁଥାଏ । ]

ଅମର—ହେଃ, ଯାଅ—ଯାଅ—ବାହାର ଯାଅ ଏଠୁ । ଓଦୋ-କାର୍ତ୍ତିକ ଏଠି ଏତେ ଭିଡ଼ କରୁଛ ଭଲ । ଆରେ ଲୋକଟାର ଦମ୍ ବନ୍ଦ ହୋଇଯିବ । ଯାଅ ଏଠୁ ।

ଚନ୍ଦ୍ରା—ଆଃ । ସମସ୍ତଙ୍କୁ ଆଡ଼ ହୋଇଯିବାକୁ କହ ତ । ମୁଁ କ୍ଷୀର ଗରମ କରି ନେଇ ଆସୁଛି । (ପ୍ରସ୍ଥାନ)

ଶୁଭଦ୍ରା—ଇଲେ ମା ! ତମେ ସବୁ ଘେରିଯାଇ ଦେଖୁଚ କ'ଣ ? ମଲା ଯାଉନ କାର୍ତ୍ତିକ ମ । ଭଲ ହୋଇଗଲେ ସମସ୍ତେ ଆସି ଜଣ ଜଣ କରି ଦେଖି ଯିବନ ?

ପିଲାମାନେ—ସ୍ମଲ୍ ବେ ଧକାଧକ୍କି ଦେଖିଯିବା ସ୍ମଲ ।

ଅମର—ବୁଝିଲୁ ଖୁଡ଼ି ! ହାଣ୍ଡିଟା ଏ ରଜା ପୁଅକୁ କେଉଁଠୁ ପାଣିରୁ ଟେକି ଆଣିଛି । ନ ହେଲେ ତା ଲୁଗାପଟା ଭିଜିଲା କେମିତି ?

ଶୁଭଦ୍ରା—ଯାହା କହିଲୁ ବାପ । ଏ ନିଶ୍ଚୟ ଜଣେ ରଜା ପୁଅ ହେବ ! ଏ ଯେଉଁ ରୂପ, ବୁଝିଲୁ ଅମର, କାଲି ଘଣ୍ଟାରେ ସେଇ ଝଡ଼ ତୋଫାନ ଭିତରେ ଯେତେବେଳେ ଘୋ କରି ଶବ୍ଦଟା ହେଲାନି, ବୋଧହୁଏ ସେତେବେଳେ ବନ୍ଧଭାଙ୍ଗି ପାଣି

ମାଡ଼ ଯାଉଛୁ; ସେଇ ପାଣି ସୁଅରେ ନିଶ୍ଚୟ ଏ ରଜାପୁଅ ଭସି ଯାଉଥିଲା । ଘୋଡ଼ାମୁହାଁଟା ଗଲା କୁଆଡ଼େ ମ ? ଗରମ କ୍ଷୀର ଟିକେ ଆଣିବାକୁ ଏତେ ଡେରି ? ଏ ଚାନ ! ଆଲୋ ଏତେ ସମୟ ଧରି କ'ଣ କରୁଚୁ ?

ଚନ୍ଦ୍ରୀ—(ଭିତରୁ) ଯାଉଚି ଆଜ୍ଞା ।

ଅମର—ଟୁଡ଼ି ! ଲୋକଟାର ତ ଜାତି ପତି ଜଣା ପଡ଼ିଲା ନାହିଁ ?

ଶୁଭଦ୍ରା—ତୁ ଚୁପ୍ କଲୁ । ଜାତି କଥା ପରେ । ଆଗେ ତା ଚେତା ଫେରୁ । (ଚନ୍ଦ୍ରୀ ଆସିଛି କ୍ଷୀର ଧରି) ଆଉ ଟିକିଏ ଡେରି କଲୁନି ? ଏତେବେଳ ଯାଏ ଲୋକଟାର ଚେତା ଫେରିବାକୁ ନାହିଁ । ମୁଁ ଯେ ଏଇନେ କରେ କ'ଣ ? ମଲା ! ସେଇଠି କାଠ ପାଲଟିଗଲୁ ନା କ'ଣ ? ଆଲୋ ହୁଣ୍ଡି । ସେ ପୁଅକୁ ଅଳ୍ପ ଅଳ୍ପ କରି କ୍ଷୀର ପିଆଉ ଥା । ଏଁ, ଅମର, ମୋ ସାଙ୍ଗେ ଚାଲିଲୁ ସେଷ୍ଠି ନରି ବଇଦକୁ ସାଙ୍ଗରେ ଧରି ଆସିବା—ଚାଲ ।

ଅମର—ହଁ ଚାଲୁନା, ମୁଁ କଣ ମନା କରୁଚି ।

ଶୁଭଦ୍ରା—ହଁ ଚାଲ, ହଁ ପୁଅକୁ ଛାଡ଼ି କୁଆଡ଼େ ଯିବୁ ନାହିଁ । ଆଉ କାହାକୁ ଭିତରକୁ ପଶିବାକୁ ଦେବୁ ନାହିଁ । ବୁଝିଲୁଁ, ମଝିରେ ମଝିରେ ଟିକିଏ ଢଙ୍ଗାକରି ଦେଉଥିବୁ । ଚାଲ, ଚାଲ—(ଶୁଭଦ୍ରା ଓ ଅମର)

(ପ୍ରସ୍ଥାନ)

ସିରାଜ—(କିଛି ସମୟ ପରେ ଆଖି ଖୋଲି) ମୁଁ କେଉଁଠି ?

ଚନ୍ଦ୍ରୀ—କହୁଛି, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଆଗେ କ୍ଷୀରଟା ପିଇଦିଅନ୍ତୁ ।

ସିରାଜ—ନା—ମୋତେ ଆଗ କୁହ ମୁଁ କୋଉଠି ।

ଛନସ୍ନା—ଏଇଟା ଆମର ଭଦ୍ରକ ପାଇକବସ୍ତି ।

ସିରାଜ—ଉଃ, ଆଚ୍ଛା (କ୍ଷୀର ପିଇଲା)

ଛନସ୍ନା—ଆପଣ ଆଜି କିଛି ସମୟ ଶାନ୍ତରେ ଶୋଇପଡ଼ନ୍ତୁ । ମୁଁ ଆପଣଙ୍କୁ ବଞ୍ଚିଦେଉଛି ।

ସିରାଜ—ନା କିଛି ଦରକାର ନାହିଁ । ଆଚ୍ଛା, ମୁଁ ଏଠାକୁ ଆସିଲି କିପରି ?

ଛନସ୍ନା—ଗୋଟାଏ ଧଳାହାଣ୍ଡି, ହେଇ ସେ ଗାଁ ତୋଟାରେ ଡାଳ ଭାଙ୍ଗି ଖାଉଛି ! ସେ ଆପଣଙ୍କୁ ଶୁଣ୍ଢରେ ଟେକି ଏଠାକୁ ନେଇ ଆସିଲା । ଆପଣ ପାଣିରେ ଗୋଟାପଣେ ଭିଜି ଯାଇଥିଲେ । ବୋଧହୁଏ କେଉଁଠି ବୁଡ଼ିଯାଉଥିବା ଅବସ୍ଥାରେ କମ୍ବା ଭସି ଯାଉଥିବା ବେଳେ, ହାଣ୍ଡିଟି ଆପଣଙ୍କୁ ଟେକି ନେଇ ଏଠାକୁ ଆସିଛି ।

ସିରାଜ—ହଁ ହଁ, ସବୁକଥା ଏବେ ମୋର ଗୋଟି ଗୋଟି ହୋଇ ମନେପଡ଼ି ଯାଉଛି ।

ଛନସ୍ନା—ଆପଣଙ୍କର ନାଁ ?

ସିରାଜ—ଏଁ, ମୋ ନାଁ ବଜୟ ମଲ୍ଲ । ମୁଁ ଶାହାଜାଦା ସିରାଜ ଉଦ୍ଦୌଲାଙ୍କ ସେନାପତି ।

ଛନସ୍ନା—ଜାତିରେ ?

ସିରାଜ—ଜାତିରେ ? କାହିଁକି ? ହିନ୍ଦୁ । (ହସି) ମାନେ······ଆମେ ରାତିରେ ଗୁଜଣୀ ପକାଇଥିଲୁ । ହଠାତ୍ ଅର୍ଦ୍ଧରାତିରେ, କେଉଁଠି ପାଣିମାଡ଼ି ଆସିଲା । ତାପରେ ସମସ୍ତେ କିଏ,

କୁଆଡ଼େ ଭସିଗଲେ । (ଭାବି) ମୋତେ ଏଇନେ ଯିବାକୁ ହେବ । (ଉଠିଲା)

ଚନ୍ଦ୍ରା—ଶୁଣନ୍ତୁ, କ'ଣ ହେଲା ଆପଣଙ୍କର ?

ସିରାଜ—(ଚମକି) ଉଁ, ନା ସେ କିଛି ନୁହେଁ । ଅଚ୍ଛା ଏ ଯାଏ ଆପଣଙ୍କ ପରିଚୟଟା ତ ଜାଣିପାରିଲି ନାହିଁ ।

ଚନ୍ଦ୍ରା—ମୋ ନାଁ ଚନ୍ଦ୍ରା । ମୁଁ ପାଇକ ସର୍ଦ୍ଦାର ଶମ୍ଭୁଶଙ୍କରଙ୍କ ଝିଅ ।

ସିରାଜ—ତୁମେ—ଆପଣ ପାଇକ ସର୍ଦ୍ଦାର ଶମ୍ଭୁଶଙ୍କରଙ୍କ ଝିଅ ।

ଚନ୍ଦ୍ରା—ହଁ, ବାପା ମୁର୍ଶିଦାବାଦ ନବାବଙ୍କର ଚିଠି ପାଇ, ଜଗନ୍ନାଥ ଦୁର୍ଗ ଦଖଲରେ ଯାଇଛନ୍ତି । ଦୁଇଦିନ ହେଲା ଗଲେଣି ସେ—

ସିରାଜ—ଏ ପର୍ଯ୍ୟନ୍ତ ଫେରି ନାହାନ୍ତି ।

ଚନ୍ଦ୍ରା—ନା, ଆପଣ ଏମିତି ଚମକି ଉଠିଲେ ଯେ ?

ସିରାଜ—ନା, ସେ କିଛି ନୁହେଁ ।

ଚନ୍ଦ୍ରା—ଆପଣ କିଏ ? ମୋ ବାପାଙ୍କୁ ଆଗରୁ ଜାଣନ୍ତି ?

ସିରାଜ—ହଁ,—ନିଶ୍ଚୟ ଜାଣିଛି । ଆହୁରି ମଧ୍ୟ ଜାଣିଛି ପାଇକ ବୀର ଲଲଚେନ୍ଦ୍ରଙ୍କୁ ।

ଚନ୍ଦ୍ରା—ଲଲଚେନ୍ଦ୍ର ! (ଚମକିଲା)

ସିରାଜ—ତୁମେ ଚମକି ପଡ଼ିଲ ଯେ !

ଚନ୍ଦ୍ରା—ନା, ଚମକିବି କାହିଁକି ? କିଏ ଦେଖୁଛନ୍ତି ?

ସିରାଜ—ନା, ମାନେ ଚମକି ପଡ଼ିଲେ ତୁମେ ଖୁବ୍ ସୁନ୍ଦର ଦେଖାଯାଅ । ଠିକ୍ ଯେମିତି, ନୀଳ ମେଘରେ ଚପଳା ।

ତନସ୍ୱୀ—ଜିଁ, ଆପଣଙ୍କ ଦେହ ବର୍ତ୍ତମାନ କେମିତି ଲାଗୁଚି କହିଲେ ?

ସିରାଜ – ନା, ବର୍ତ୍ତମାନ ମୁଁ ସମ୍ପୂର୍ଣ୍ଣ ସୁସ୍ଥ ଆଉ ତୁମେ ? ତୁମେ କେମିତି ଅଛ ?

ତନସ୍ୱୀ – ମୁଁ ? ମୋର କଣ ହେଇଚି କି ? ମୁଁ ତ ପାଣିରେ ବୁଡ଼ି ଯାଇନି କି, ବୁଡ଼ି, ବୁଡ଼ି ପାଣି ପିଇବାର ଅଭ୍ୟାସ ମୋର ନାହିଁ ।

ସିରାଜ – ମାନେ ? କଣ କହିବାକୁ ଚାହଁ ତୁମେ ?

ତନସ୍ୱୀ—(ହସି) ଆପଣ ଶାହାଜାଦା ସିରାଜଙ୍କ ସେନାପତି ହୋଇ, ସାମାନ୍ୟ ଗୋଟିଏ ପାଇକ ଝିଅର କଥା ବୁଝି ପାରିଲେ ନାହିଁ ? ଆପଣଙ୍କର କି ଯୋଗ୍ୟତା ଦେଖି ଶାହାଜାଦା ଆପଣଙ୍କୁ ସେନାପତି କରିଛନ୍ତି, କେଜାଣି ?

ସିରାଜ—ଚମତ୍କାର ! ତୁଏତ ଶାହାଜାଦାଙ୍କର ସେନାପତି ନିର୍ବାଚନରେ ତ୍ରୁଟି ରହିଯାଇଛି । ତୁମଭଳି ବିଚକ୍ଷଣା ବୁଦ୍ଧିମତୀଙ୍କୁ ଉପଦେଷ୍ଟା ରୂପେ ପାଖରେ ପାଇଲେ, ତୁଏତ ଶାହାଜାଦାଙ୍କର ଏଭଳି ଭୁଲ ହୋଇପାରନ୍ତା ।

ତନସ୍ୱୀ—ସତେ ? ଦୁର୍ଦ୍ଧର୍ଷ ଓଡ଼ିଆ ପାଇକକୁଳର ଝିଅକୁ ଉପଦେଷ୍ଟା ରୂପେ ପାଇବାକୁ ହେଲେ, ଆପଣଙ୍କ ଶାହାଜାଦାଙ୍କୁ ସାତଜନ୍ମ ତପସ୍ୟା କରିବାକୁ ପଡ଼ିବ ।

ସିରାଜ—ତନସ୍ୱୀ, ତୁମେ ମୋର ବିପଦ ବେଳେ ସାହାଯ୍ୟ କରିଛ । ମୋର ଅଚେତନ ଅବସ୍ଥାରେ ଶୁଶ୍ରୂଷା କରିଛ । ତେଣୁ ଶାହାଜାଦାଙ୍କ ପ୍ରତି ତୁମର ଏ କଟୁ ଆକ୍ଷେପ ଶୁଣି ମଧ୍ୟ

ମୁଁ ନୀରବ ରହିବାକୁ ବାଧ୍ୟ ହୋଇଛି । ଆଚ୍ଛା, ମୁ ଆସୁଛି ଜନସ୍ତ୍ରୀ ।

ଜନସ୍ତ୍ରୀ—ଶୁଣନ୍ତୁ, ଆପଣ ଯେ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ନାହାନ୍ତି । ଚାଲିପିବେ କେମିତି ?

ସିରାଜ—ବାଃ ଜନସ୍ତ୍ରୀ, ତୁମ ଆଖିରେ ଅଯୋଗ୍ୟ ହେଲେ ବି, ମୁଁ ଜଣେ ସେନାପତି ସଚେତନରେ ଥାଇ, ମୁଁ କର୍ତ୍ତବ୍ୟରେ ଅବହେଳା କରିପାରିବ ନାହିଁ । ମୁଁ ଆସୁଛି । (ଚାଲିଗଲେ)

( ଅନ୍ଧାର )

## ନବମ ଦୃଶ୍ୟ

[ ବନ—ଭସ୍କର ପଣ୍ଡିତ ଓ ଶମ୍ଭୁରାଓ ପଦଚାରଣ କରୁଥାନ୍ତି ]

ଭସ୍କର—ଲୁଣ୍ଠନ କର । ଘରେ ଘରେ ଅଗ୍ନିସଂଯୋଗ କର । ଜଗନ୍ନାଥ ଦୁର୍ଗ ବିଜୟର ପ୍ରତିଶୋଧ ନିଅ । ଆଜି ଖୋଜି ବାହାର କର ସେ ଶାହାଜାଦା ସିରାଜଙ୍କୁ । ତାଙ୍କୁ ବନ୍ଦୀକରି-ପାରିଲେ ଆମର ସ୍ୱପ୍ନ ସାର୍ଥକ ହେବ । ଗୁପ୍ତଚର ଦ୍ୱାରା ଖବର ମିଳିଛି, ସେ ଏଇ ପାଇକ ବସ୍ତିରେ ଆଶ୍ରୟ ନେଇଛି ।

ଶମ୍ଭୁ—ଆଜ୍ଞା, ବସ୍ତି ତ ଜନଶୂନ୍ୟ ।

ଭସ୍କର—ହଁ, ଏଇ ହେଉଛି, ଉପଯୁକ୍ତ ସମୟ । ଜଳ ସ୍ରୋତରେ କିଏ କୁଆଡ଼େ ଭସି ଯାଇଛନ୍ତି । ଏଇ ହଉଛି ସୁବର୍ଣ୍ଣ ସୁଯୋଗ ଶମ୍ଭୁରାଓ ! ଆଜି ରାତିରେ ଆମର ଅବଶିଷ୍ଟ ସୈନ୍ୟଙ୍କୁ ନେଇ ସମସ୍ତ ବସ୍ତିରୁ ଖାଦ୍ୟ ଓ ଧନରତ୍ନ ବଟୁଆଣ, ଯାଅ—

ଶମ୍ଭୁ—ହଁ, ପଣ୍ଡିତ ଜୀ ।

ଭସ୍କର—ହଁ ଶୁଣ, ସିରାଜଙ୍କୁ ଖୋଜି ବାହାର କରିବାରେ ଯେପରି ଅବହେଳା ନ ହୁଏ ।

ଶମ୍ଭୁ—ପଣ୍ଡିତ ଜୀ ! ସୁଯୋଗ ଉପସ୍ଥିତ । ଶିକାର ଆପେ ଆପେ ଧରା ଦେଇଛି, ଏଇ ଦେଖନ୍ତୁ—

ଭସ୍କର—ଇଏତ ସିରାଜ; କିନ୍ତୁ ଏକା ଏପରି ଅବସ୍ଥାରେ—

ଶମ୍ଭୁ—ଜଳସ୍ରୋତରେ ବୋଧହୁଏ ଭସି ଯାଉଥିଲେ ନିଜର ସୈନ୍ୟ-ମାନଙ୍କର ସନ୍ଧାନ କରିବାକୁ । ହୁଏତ ବୁଲୁଛନ୍ତି ।

ଭାସ୍କର—ଶୁଣ ଶମ୍ଭୁରାଓ ! ତୁମେ ଅତିଶୀଘ୍ର ଏଠାକୁ ନେଇ ଆସ ! ମୁଁ ସିରାଜଙ୍କୁ ଏଠାରେ ଅଟକାଇ ରଖିଛି, ଯାଅ, ଶୀଘ୍ର ଯାଅ—ଏ ସୁଯୋଗ ହୁଏତ ଜୀବନରେ ଦ୍ୱିତୀୟଥର ଆସିବନି ।

( ଶମ୍ଭୁରାଓ ପ୍ରସ୍ଥାନ-ଭାସ୍କର ତରବାରି ଧରି ଆତ୍ମ ଗୋପନ କଲେ- ପ୍ରବେଶ କଲେ ସିରାଜ)

ସିରାଜ—ଓଃ କି ଦୁର୍ଯୋଗ ! ମୋର ସୈନ୍ୟମାନେ ଗଲେ କୁଆଡ଼େ ? ଜଣେ ହେଲେ କାହାରି ଦେଖା ପାଉନାହିଁ । ସମସ୍ତେ କଣ ସେଇ ଜଳସ୍ରୋତରେ ଭାସିଗଲେ ? ମୁଁ ଏବେ ଏକା ଏକା କରେ କଣ ? କେତେ ଆଉ ଖୋଜିବି ?

ଭାସ୍କର—(ପ୍ରବେଶି) ତୁମର ଆଉ ଖୋଜିବା ଆବଶ୍ୟକ ନାହିଁ ଶାହାଜାଦା ସିରାଜଉଦ୍ଦୌଲ୍ଲା ! କାରଣ ମୁଁ ଯେ ତୁମକୁ ଖୋଜି ପାଇଛି ।

ସିରାଜ—କିଏ, କିଏ ତୁମେ ?

ଭାସ୍କର—ମୋତେ ଚିହ୍ନିପାରୁ ନାହଁ ସିରାଜ ? ସମସ୍ତ ବଙ୍ଗ, ବିହାର, ଓଡ଼ିଶା ଯାହାର ନାମ ସ୍ମରଣ ମାତ୍ରେ ଆତଙ୍କିତ ହୁଏ, ସେଇ ବର୍ଗିସେନାପତି ଭାସ୍କର ପଣ୍ଡିତଙ୍କୁ ଚିହ୍ନିପାରୁ ନାହଁ ?

ସିରାଜ—ଭାସ୍କର ପଣ୍ଡିତ ? (ତରବାରି କାଢ଼ି)

ଭାସ୍କର—ସାବଧାନ ! ତୁମେ ବର୍ତ୍ତମାନ ବନ୍ଦୀ ।

ସିରାଜ—ବନ୍ଦୀ ! ସିରାଜ ହାତରେ ତରବାରି ଥାଉଁ ଥାଉଁ ସମସ୍ତ ହିନ୍ଦୁସ୍ଥାନରେ ଏପରି କାହାରି ଶକ୍ତି ନାହିଁ ଯେ ସିରାଜଙ୍କୁ ଶୃଙ୍ଖଳିତ କରିବ ।

(ଯୁଦ୍ଧପରେ ସିରାଜ ପରାସ୍ତ ହେଲେ)

ଭାସ୍କର—ଭାସ୍କର ପଣ୍ଡିତ ଏଇ ତରବାରିର ସଦବ୍ୟବହାର କରି ଜାଣେ ସିରାଜ ! ସେ ତୁମଭଳି ଆମୋଦ-ଆହ୍ଲାଦ-ଅଳସ ଭିତରେ ଜୀବନ ବିତାଇବାକୁ ଶିଖିନାହିଁ । ଚାଲ ତୁମେ ବନ୍ଦୀ !

ଶମ୍ଭୁ—(ପ୍ରବେଶି) ସର୍ବନାଶ ହୋଇଚି ପଣ୍ଡିତ ଜୀ ! ପାଇକମାନେ ଅତର୍କିତ ଭାବେ ଆମର ଛାଉଣୀ ଆକ୍ରମଣ କରି ଦେଇଛନ୍ତି । ଆମର ସୈନ୍ୟମାନେ ଛନ୍ନଭଙ୍ଗ ଅବସ୍ଥାରେ କିଏ କୁଆଡ଼େ ଆତ୍ମରକ୍ଷା କରିବାକୁ ପଳେଇ ଗଲେଣି ।

ଭାସ୍କର—ପାଇକ, ପାଇକ, ପାଇକ । ଏଇ ପାଇକମାନଙ୍କ ପାଖରେ କ'ଣ ଭାସ୍କର ପଣ୍ଡିତର ଦୁର୍ଦ୍ଧର୍ଷ ବର୍ଗିବାହିନୀ ବାରମ୍ବାର ପରାଜୟ ସ୍ୱୀକାର କରିବେ ?

ଲଲାଟ—(ପ୍ରବେଶି) ଦସ୍ୟୁ ଲୁଣ୍ଠନକାରୀ କେବେହେଲେ ଜୟଯୁକ୍ତ ହୋଇପାରେ ନା ଭାସ୍କର ପଣ୍ଡିତ ! ପରାଜୟ ସ୍ୱୀକାର କରିବାକୁ ତୁମେ ବାଧ୍ୟ ।

ଭାସ୍କର—କିଏ (ଚମକି) ଓଃ ତୁମେ-ତୁମେ ସେହି ପାଇକବୀର ଲଲାଟେନ୍ଦୁ ନା ?

ଲଲାଟ—ଓ ଚିହ୍ନିପାରିଚ ତାହେଲେ ? ଧନ୍ୟବାଦ (ଗମ୍ଭୀର ହୋଇ) ହଁ ମୁଁ ସେଇ ପାଇକବୀର ଲଲାଟେନ୍ଦୁ ମାନଧାତା । ପ୍ରଶସ୍ତ ଦିବାଲୋକରେ ଜଗନ୍ନାଥ ଗଡ଼ର ପ୍ରାଙ୍ଗଣରେ ଯାହାର ପାଦଧରି ତୁମେ ପ୍ରାଣଭିକ୍ଷା କରିଥିଲ—ଭାସ୍କର ପଣ୍ଡିତ ! ମନେ ପଡ଼ୁଚି ତୁମର ସେଇ ନିଶ୍ଚିତ ମରଣର ମୁହୂର୍ତ୍ତଟି ? କେଉଁ ସର୍ତ୍ତରେ ମୁଁ ତୁମକୁ ପ୍ରାଣଭିକ୍ଷା ଦେଇଥିଲି ?

ଭାସ୍କର—ସୂର୍ଯ୍ୟାସ୍ତ ପୂର୍ବରୁ ଏ ଅଞ୍ଚଳ ଛାଡ଼ି ଚାଲିଯିବି କହିଥିଲି ।

ଲକ୍ଷ—ତା' ହେଲେ ଯାଇନାହଁ କାହିଁକି ? ଆଚ୍ଛା ଭାସ୍କର ପଣ୍ଡିତ ! ଆମେ ତୁମର କି ଅପରାଧ କରିଛୁ ? ବାରମ୍ବାର ଅତର୍କିତ ଆକ୍ରମଣ କରି ଆମର ଶାନ୍ତ ସରଳ ଜୀବନକୁ ଅଶାନ୍ତ ଅସ୍ଥିର କରି ଦେଉଛ ? ଗାଁ ପରେ ଗାଁ ଲୁଟିନେଇ ସେଥିରେ ଅଗ୍ନି ସଂଯୋଗ କରୁଛ ? ଏତେପରେ ବି ତୁମର ଆଶା ମେଣ୍ଟିଲା ନାହିଁ ଭାସ୍କର ପଣ୍ଡିତ ! ଶେଷରେ ସାଲନ୍ଦୀର ଜଳାଶୟକୁ କାଟିଦେଇ, ଆମର ଏ ସୁଜଳା ସୁଫଳା ଶସ୍ୟଶ୍ୟାମଳା ଅଞ୍ଚଳଟାରେ ହା-ହା-କାର ଖେଳାଇ ଦେଲ ? ଏଥିପାଇଁ ମୁଁ ତୁମକୁ କ୍ଷମା ଦେଇପାରେ ! ବଙ୍ଗ, ବିହାର ଓଡ଼ିଶାର ଭାବୀ ନବାବ ତୁମକୁ କ୍ଷମା ଦେଇପାରନ୍ତି । ହେଲେ ଇତିହାସର ସୁବର୍ଣ୍ଣ ପୃଷ୍ଠାରେ ବର୍ଗୀମାନେ ଯୁଗଯୁଗକୁ ଏକ କଳଙ୍କିତ ଅଧ୍ୟାୟ ହୋଇ ରହିଯିବେ ।

ଭାସ୍କର—ଲକ୍ଷ୍ମଣେନ୍ଦ୍ର ?

ଲକ୍ଷ—ଯାଅ—ଲୁଚିଯାଅ ଭାସ୍କର ପଣ୍ଡିତ ! ତୁମକୁ ଓ ତୁମର ସୈନ୍ୟମାନଙ୍କୁ ବନ୍ଦୀକରି ଓଡ଼ିଶା ସୀମା ବାହାରେ ଛାଡ଼ିଦେବାକୁ ମୁଁ ମୋର ପାଇକମାନଙ୍କୁ ନିର୍ଦ୍ଦେଶ ଦେଇଚି ।

ଶୁଭ—(ପ୍ରବେଶି ) ଲକ୍ଷ୍ମଣେନ୍ଦ୍ର ସମସ୍ତ ବର୍ଗୀ ସୈନ୍ୟ ବର୍ତ୍ତମାନ ଆମ ପାଇକମାନଙ୍କ ଘେରରେ ବନ୍ଦୀ, ତମର ନିର୍ଦ୍ଦେଶକୁ ପାଇକମାନେ ଅପେକ୍ଷା କରି ରହିଛନ୍ତି ।

ଲକ୍ଷ—ଶୁଣିପାରୁଛ ଭାସ୍କର ପଣ୍ଡିତ ! ବର୍ତ୍ତମାନ ତୁମର ଆଉ କୌଣସି ଶକ୍ତି ନାହିଁ । ଯାଅ ଶୁଭଭାଇ ଏ ଦୁଇଜଣଙ୍କୁ ମଧ୍ୟ ବନ୍ଦୀକରି ନେଇଯାଅ । ସମସ୍ତ ବର୍ଗୀବାହିନୀଙ୍କୁ ଓଡ଼ିଶା ସୀମା-ବାହାରେ ଛାଡ଼ିଦେଇ ଆସିବାକୁ ମୁଁ ନିର୍ଦ୍ଦେଶ ଦେଉଛି ।

ଶୁଭ—ବମ୍ ଶିବ ଶମ୍ଭୋ । ରାଜଚକ୍ରବର୍ତ୍ତୀ ହେବାର ସମସ୍ତ ହୋଇଗଲା ପଣ୍ଡିତ ! ମହାମନ୍ତ୍ରୀଙ୍କୁ ସାଙ୍ଗରେ ଧରି ବେଗେ ବେଗେ ପାହୁଣ୍ଡ ପକାନ୍ତୁ । ( ଦୁହିଙ୍କୁ ନେଇ ପ୍ରସ୍ଥାନ )

ସିରାଜ—ଲଲ୍ଟେନ୍ଦୁ !

ଲଲ୍ଟ—ଶାହାଜାଦା ।

ସିରାଜ—ମୋ ବକ୍ଷକୁ ଆସ ଭାଇ ।

ଲଲ୍ଟ—ଶାହାଜାଦା !

ସିରାଜ— ନା-କୁହ ଭାଇଜାନ୍ ।

ଲଲ୍ଟ—ଭାଇ ଜାନ ।

ସିରାଜ—ହଁ, ଭାଇଜାନ୍, ଡାକ ହଇ ! ଥରେ ଭାଇଜାନ୍ ବୋଲି । ସମ୍ବୋଧନ କରି । ଡାକ ଲଲ୍ଟେନ୍ଦୁ ଡାକ ତୁମେ......

ଲଲ୍ଟ—ଭାଇ ! ( ଆଲିଙ୍ଗନ କଲେ )

ସିରାଜ—ଲଲ୍ଟ ( ଉଭୟଙ୍କ ଆଖିରେ ଲୁହ ) ଲଲ୍ଟେନ୍ଦୁ ! କ ଭାଷାରେ ମୁଁ ମୋର କୃତଜ୍ଞତା ପ୍ରକାଶ କରିବ ଲଲ୍ଟ ? କଭଳ ଭାବରେ ମୋର ଅନ୍ତରର ଆବେଗକୁ ତୁମକୁ ବୁଝାଇବ ? କ'ଣ ଦେଇ ମୁଁ ତୁମର ଋଣ ସୁଝିବ ?

ଲଲ୍ଟ—କିଛି ନାହିଁ, କିଛି ନାହିଁ ଭାଇଜାନ ! ମୁଁ ଯେପରି ଆପଣଙ୍କର ବିଶ୍ୱାସଭାଜନ ହୋଇ ମୋ ଜାତିର ଟେକ ରଖିପାରେ, ସେଇ ଆଶୀର୍ବାଦ ମୋତେ କରନ୍ତୁ ଭାଇଜାନ ! (ନଇଁପଡ଼ି) ସେଇ ଆଶୀର୍ବାଦ ମୋତେ କରନ୍ତୁ ।

ସିରାଜ— ଲଲ୍ଟ ! ତୁମେ କେଡ଼େ ମହାନ୍ !

( ଅନ୍ଧାର )

## ଦଶମ ଦୃଶ୍ୟ

[ କକ୍ଷ-ପ୍ରବେଶ କଲେ ଜହରତ
ଓ ସଲ୍‌ଓ୍ୱତ ]

ଜହରତ୍—ଶାହାଜାଦାଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । ନବାବ ସାହେବଙ୍କ ନିକଟକୁ ଖବର ଦିଅ, ଶାହାଜାଦାଙ୍କର ମୃତ୍ୟୁ ଘଟିଛି ।

ସଲ୍‌ଓ୍ୱତ୍—ଏ ଖବର ଶୁଣି ନବାବ ସାହେବ ଧୈର୍ଯ୍ୟ ଧରି ପାରିବେ ତ ?

ଜହରତ୍—ଅଶୀ ବର୍ଷର ବୃଦ୍ଧ ନବାବ ଆଲିବର୍ଦ୍ଦି ଖାଁ ତାଙ୍କର ଏକମାତ୍ର ଉତ୍ତରାଧିକାରୀ ନାତି ଶାହାଜାଦାଙ୍କୁ ହରାଇ ଜୀବନ ଧରି ପାରିବେ ନାହିଁ, ସେକଥା ମୁଁ ଜାଣେ ।

ସଲ୍‌ଓ୍ୱତ୍—ଶାହାଜାଦାଙ୍କର ମୃତ୍ୟୁ ସମ୍ବାଦରେ ବୃଦ୍ଧ ନବାବ ଯଦି ଦେହତ୍ୟାଗ କରନ୍ତି, ତେବେ ଏ ବଙ୍ଗ, ବିହାର, ଓଡ଼ିଶାର ମସନଦ୍‌ରେ ବସିବ କିଏ ?

ଜହରତ୍—ଜାଣିନାହିଁକି, ସମସ୍ତ ମୋଗଲ୍‌ବାହିନୀ ଯାହା ହାତରେ ସେଇ ସେନାପତି ଜହରତ୍ ।

ସଲ୍‌ଓ୍ୱତ୍—ଆପଣ ! ! !

ଜହରତ—ହଁ, ମୁଁ, ମୁଁ ହେବି ଏଇ ସମଗ୍ର ମୁସଲମାନ ସାମ୍ରାଜ୍ୟର ଅଧୀଶ୍ୱର । ଆଜ ଆଲେୟା ଦିବି—ହାଃ···ହାଃ···ହାଃ ଆଲେୟା ବେଗମ୍ ହେବ ମୋର ଅଙ୍କଶାୟିନୀ । ଶୀଘ୍ର ମୋର

ନାମାଙ୍କିତ ଫଳକରେ ଶାହାଜାଦାଙ୍କର ମୃତ୍ୟୁ ସମ୍ବାଦ ମୁର୍ଶିଦାବାଦକୁ ପଠାଇ ଦିଅ ।

ସଲାଓ୍ବତ୍—ଯାଉଛି ଆଜ୍ଞା ।

ଜହରତ୍—ଶୁଣ, ଇମାମ୍ ଆଲିଙ୍କୁ ଖବର ଦିଅ, ଆଲେୟା ବିବିକୁ ମୋ ପାଖକୁ ନେଇ ଆସିବାକୁ । (ସଲାଓ୍ବତ ପ୍ରସ୍ଥାନ) ସୁବର୍ଣ୍ଣ ସୁଯୋଗ, ମଣିଷ ଜୀବନରେ ଯାହା ଆଶାକରି ନ ଥାଏ, ଖୋଦା ତାହା ଭାଗ୍ୟରେ ଯୁଟାଇ ଦିଅନ୍ତି । ଏ ସାମ୍ରାଜ୍ୟର ଭାବି ଅଧୀଶ୍ୱର ଜହରତ୍ ଖାଁ । ଆଉ ଆଲେୟା ହବ ଭାବୀ ବେଗମ୍ । ମୋର ବହୁଦିନର ସ୍ୱପ୍ନ ଆଜ ସଫଳ ହେବାକୁ ଯାଉଛି । କୋଇ ହୈ ।

ରହେମତ୍—(ପ୍ରବେଶି) ଜୀ ହଜୁର ।

ଜହରତ୍—ଆମର ସୈନ୍ୟ ଛାଉଣୀରେ ଖବର ଦିଅ । ଆଜି ସମସ୍ତଙ୍କର ବିଶ୍ରାମ । ଆଜି ବିଶେଷ ଭୋଜନର ବ୍ୟବସ୍ଥା ହେବ ।

ରହେମତ—ଜୀ ହାଁ ।

ଜହରତ—ଆଉ ଖବର ଦିଅ, ଆଜି ସନ୍ଧ୍ୟାରେ ସୈନ୍ୟ ଛାଉଣୀର ସମସ୍ତେ ସେନାପତି ସାହେବଙ୍କ ସହିତ ମିଳିତ ହେବେ ।

ରହେମତ—ଜୀ ହାଁ । (ପ୍ରସ୍ଥାନ)

ଜହରତ—ଆଗାମୀ ଯୋଜନା ପ୍ରସ୍ତୁତ କରିବାକୁ ହେବ । ଶୀଘ୍ର ମୁର୍ଶିଦାବାଦ ଫେରିଯାଇ ବୃଦ୍ଧ ନବାବଙ୍କୁ କୌଶଳରେ ହତ୍ୟା କରିବାକୁ ହେବ । ମୋ ଜୀବନରେ ଏକ ବିରାଟ ପରିବର୍ତ୍ତନ ହେବାକୁ ଯାଉଛି । ସାହସର ସହିତ ତାହା କାର୍ଯ୍ୟରେ ପରିଣତ କରିବାକୁ ହେବ ।

ଉଦେମତ—(ପ୍ରବେଶି) ହଜୁର, ବାହାରେ ଆଲେୟା ଦବ ଓ ଇମାମ୍ ସାହେବ ଆପଣଙ୍କ ଅପେକ୍ଷାରେ ।

ଜାହରତ—ଆସିବାକୁ କୁହ ।

ଉଦେମତ—ଜୀ ହଜୁର । (ପ୍ରସ୍ଥାନ)

ଜାହରତ—ଆଲେୟା ବଦ, ଆସମାନ ଗୃନ୍ଦ—ବହୁଦ୍ଦନ ମନ ଉପବନରେ ମୋର କେତେ ଆଶାର କୁସୁମ ପ୍ରସ୍ଫୁଟିତ ହୋଇ ମଉଳି ଯାଉଛି । ଆଜ ଆଜ ହାଃ-ହାଃ-ହାଃ

(ଇମାମ୍, ଆଲେୟା ପ୍ରବେଶ)

ଇମାମ
ଆଲେୟା } —ସଲାମ୍ ସେନାପତି ସାହେବ !

ଜାହରତ—ଆସ ଆଲେୟା ! ବଡ଼ ଦୁଃ-ସମ୍ବାଦ ପାଇଲି ଯେ, ଜଳସ୍ରୋତରେ ଶାହାଜାଦାଙ୍କର ମୃତ୍ୟୁ ଘଟିଛି ।

ଆଲେୟା—ଏ ସମ୍ବାଦ କଣ ସତ୍ୟ ସେନାପତି ସାହେବ ? ଶାହାଜାଦା ସିଦ୍ଧଜ ଆଉ ନାହାନ୍ତି ?

ଜାହରତ—ଧୀରେ ଆଲେୟା ଧୀରେ, ଭାଙ୍ଗିପଡ଼ିଲେ ଚଳିବନି । ସମସ୍ତ ମୁସଲମାନ ସାମ୍ରାଜ୍ୟର ଇତିହାସରେ ଏପରି କେତେ ପରିବର୍ତ୍ତନର ଘଟଣା ଘଟିଯାଉଛି । ଏସବୁ ଘଟଣାକୁ ଭୁଲି ଆମକୁ ଭବିଷ୍ୟତକୁ ପ୍ରସ୍ତୁତ ହେବାକୁ ହେବ । ଶୁଣ ଇମାମ୍— ଆଜଠାରୁ ଅଲେୟା ବଦ ମୋ ଶିବିରରେ ରହିବେ । ନ ହେଲେ ସଙ୍ଗୀହୀନା ହୋଇ ସେ ଭାଙ୍ଗିପଡ଼ିବେ । ଶାହାଜାଦାଙ୍କର ଅନୁପସ୍ଥିତିରେ ଏ ସାମ୍ରାଜ୍ୟ ଭାବୀ ଉତ୍ତରାଧିକାରୀ ହେଉଛି ମୁଁ ।

ଆଉ ଅାଲେୟା ନବ ହେବେ ମୋର ବେଗମ । କ'ଣ ଅାଲେୟା ନବ ? ?

ଆଲେୟା—ମୋତେ ଟିକଏ ଭାବିବାକୁ ଦିଅନ୍ତୁ ସେନାପତି ସାହେବ ! ହଠାତ୍ ଏତେ ବଡ ସମ୍ବାଦ ଶୁଣି ମୁଁ ବିଚଳିତ ହୋଇ ପଡ଼ୁଛି ।

ଜହାଙ୍ଗୀର—ନିଶ୍ଚୟ, ନିଶ୍ଚୟ, ଏହା ହେବା ତ ସ୍ୱାଭାବିକ । କିନ୍ତୁ ମୁଁ ଯେତେବେଳେ ଅଛି—ତୁମର ଚିନ୍ତିତ ହେବାର କିଛି ନାହିଁ ।

ଇମାମ୍—ହଜୁର । ଏ ଇମାମକୁ ଜରୁର ଇନାମଟା ମିଳିଯିବା ଦରକାର ।

ଜହାଙ୍ଗୀର—ନିଶ୍ଚୟ ମିଳିବ । କିନ୍ତୁ ଏ ସମ୍ବାଦ ଶୁଣି ସାରିଲା ପରେ ମୋର ମସ୍ତିଷ୍କ ମଧ୍ୟ ଭାରାକ୍ରାନ୍ତ । ଯାଅ ଇମାମ୍—ଏ ମନଟା ହାଲୁକା କରିବା ପାଇଁ ବର୍ତ୍ତମାନ ନାଚ, ଗୀତ ଆଉ ସରବତର ବ୍ୟବସ୍ଥା କର ।

ଇମାମ୍—ଯାଉଛି ହଜୁର । (ପ୍ରସ୍ଥାନ)

ଜହାଙ୍ଗୀର୍—ଆସ ଆଲେୟା । ତୁମକୁ ଆଉ ଅବହେଳା କରିପାରିବି ନାହିଁ । ଆଜି ତୁମରି ହାତରେ ମୁଁ ଆକଣ୍ଠ ସରବ୍ ପିଇବି ।

(ନାଚ ଗୀତ ପରେ ସିରାଜଙ୍କର ପ୍ରବେଶ)

ସିରାଜ—ଜହାଙ୍ଗୀର୍ ।

ଜହାଙ୍ଗୀର୍—(ଉଠିପଡ଼ି) ଶାହାଜାଦା ! ଆପଣ ?

(କୁର୍ଣ୍ଣିସ କଲେ ସମସ୍ତେ) ।

ସିରାଜ—ହଁ, ମୁଁ ମରିନାହିଁ । ମୋର ମୃତ୍ୟୁ ସମ୍ବାଦ ଆମ ସୈନ୍ୟ ଛାଉଣୀ ଭିତରେ ପ୍ରଚାର କରିଦେଇ ବେଶ୍ ଆମୋଦ

ଆହ୍ଲାଦରେ ମାତି ଯାଇଛ ଦେଖୁଛି । ଆଜି ଅ'ଲେୟା, ତୁମେ ବି ଏତେ ଶୀଘ୍ର ତୁମର ଶାହାଜାଦାଙ୍କୁ ଭୁଲିଗଲ ?

ଆଲେୟା—ନା ଶାହାଜାଦା, ବର୍ତ୍ତମାନ ସେନାପତି ସମ୍ବାଦ ଦେଲେ ।

ସିରାଜ— ସିରାଜ ଜଳସ୍ରୋତରେ ଭାସିଯାଇ ମୃତ୍ୟୁବରଣ କରିଛନ୍ତି ନା ?

ଜହରତ୍—ମୋର ଗୁସ୍ତାଖି ମାଫ୍ କରିବେ ଶାହାଜାଦା । ଦୂତ ମୁଖର ସଂବାଦକୁ ବିଶ୍ୱାସ କରି ଆମେ ଦୁଃଖରେ ଭାଙ୍ଗି-ପଡ଼ିଥିଲୁ ।

ସିରାଜ—ତା ତ ମୁଁ ଦେଖୁଛି । ସେଇ ଦୁଃଖକୁ ଲାଘବ କରିବା ପାଇଁ ଏଇ ସୁରା ସାକୀର ଆୟୋଜନ କରିଥିଲ ନା ?

ଜହରତ୍—ଶାହାଜାଦା !

ସିରାଜ—ଶୁଣ ଜହରତ୍ । ବଙ୍ଗ ବିହାର ଓଡ଼ିଶାର ନବାବ ଆଲିବର୍ଦ୍ଦି ଖାଁଙ୍କର ସେନାପତି ପକ୍ଷେ ଏଭଳି ଏକ ଭିତ୍ତିହୀନ ସଂବାଦକୁ ବିଶ୍ୱାସ କରି କୌଣସି ଚରମ ନିଷ୍ପତ୍ତି ନେବା କେବଳ ଅବିବେକିତା ନୁହେଁ-ବିଶ୍ୱାସଘାତକତାର ପରିଚୟସୂଚକ । ନବାବ ସାହେବଙ୍କ ନିକଟରେ ଏ ସଂବାଦ ଦେଇଥିବା ଯୋଗୁଁ ତୁମକୁ କି ଶାସ୍ତି ଦେବି ଜାଣ ? କିନ୍ତୁ, ମୁଁ ତା କରିବାକୁ ଦେବି ନାହିଁ, ତମକୁ କ୍ଷମା ଦେଲି । ଭବିଷ୍ୟତରେ ଯେପରି ଏ ଭୁଲର ପୁନାରାବୃତ୍ତି ନ ହୁଏ ? ଯାଅ ! ଇମାମ୍ ଶୁଣ !

ଇମାମ୍—ହଜୁର

ସିରାଜ—ବୀରତ୍ୱ ଓ ବଶ୍ୟତାର ବହୁ ପରିଚୟ ତୁମେ ଦେଇଛ ।
ତେଣୁ ତୁମକୁ ମୋର ମନର ଗୋଟିଏ ଗୋପନ କଥା ମୁଁ କହିବାକୁ ଚାହେଁ । କାର୍ଯ୍ୟକାରୀ କରିପାରିବ ?

ଇମାମ୍—ଶାହାଜାଦାଙ୍କ ପାଇଁ ଜାନ୍ କବୁଲ ହଜୁର !

ସିରାଜ—ଶୁଣ ଇମାମ୍, ଜଳସ୍ରୋତରେ ଭସି ଯାଉଥିବାବେଳେ ମୁଁ ରକ୍ଷା ପାଇଗଲି । ମୋର ମନ କିନ୍ତୁ ଭସି ଯାଇଛି । ତାକୁ ମୋତେ ଫେରାଇ ଆଣିବାକୁ ହେବ । ତୁମେ ପାରିବ ?

ଇମାମ୍—ବୁଝିପାରିଲି ନାହିଁ ହଜୁର !

ସିରାଜ—ମୁଁ ମଧ୍ୟ ତାକୁ ବୁଝିପାରି ନାହିଁ । ଜ୍ୱଳନ୍ତ ଅଗ୍ନିଶିଖା ସେ । ଅଜାଣତରେ ମୋର ଅନ୍ତରରେ ପଶି ଯେଉଁ ଦହନ ଜ୍ୱାଳା ସେ ସୃଷ୍ଟି କରିଛି; ପାରିବ ତୁମେ ତାକୁ ଉପଶମ କରି ? ଆସ ମୁଁ ତୁମକୁ ବୁଝାଇ କହିବି ।

(ଚାଲିଗଲେ)

(ଅନ୍ଧାର)

## ଏକାଦଶ ଦୃଶ୍ୟ

[ ଶତ୍ରୁଶଲ୍ୟ ଘର-ମୁସଲମାନ ପୋଷାକରେ ଲଲ୍ଲଟ ଆସି ତାନକୁ ଡାକୁଛି—ଛଦ୍ମବେଶରେ ରହି ଡାକଲା । ]

ଲଲ୍ଲଟ—କୋଇ ହେ ?

ତନୟା—(ଭିତରୁ) କଏ ?

ଲଲ୍ଲଟ—ଜେଋ ସର୍ଦ୍ଦାର ଜୀ କୋ ଖବର ଦିଜିଏ । ନେହିଁ ତୋ ଆପ୍ ଇଧର ଆ ଯାଇଏ ।

ତନୟା—(ପ୍ରବେଶି) କଏ ଆପଣ ? ମୋ ସାଙ୍ଗରେ ନା ମୋ ବାପାଙ୍କ ସାଙ୍ଗରେ ଆପଣଙ୍କ କାମ ?

ଲଲ୍ଲଟ—ଆପ ହେ ତ ସର୍ଦ୍ଦାରଜୀ କୋ କ୍ୟା ଜରୁରତ୍ ହୈ (ଧଇଲା)

ତନୟା—କଏ ? କଏ ତୁ ସଇତାନ ?

ଲଲ୍ଲଟ—ମୁଁ...ମୁଁ ବଙ୍ଗ ବିହାର ଓଡ଼ିଶାର ନବାବ ଆଲିବର୍ଦ୍ଦିଖାଁଙ୍କର ନାତି ଶାହାଜାଦା ସିରାଜଉଦ୍ଦୌଲ୍ଲା ।

ତନୟା—ସିରାଜ ଉଦ୍ଦୌଲା ? ଲମ୍ପଟ, ଚରିତ୍ରହୀନ !! ଏଠାରେ କାହିଁକି ?

ଲଲ୍ଲଟ—ମୁଁ ଆସିଛି ତୁମକୁ ନେଇ ଯିବାକୁ ।

ତନୟା—ସତେ ! ନେଇ ଯିବାକୁ ?

ଲଲାଟ—ହଁ ବେଗମ୍ । ମୁଁ ତୁମକୁ ମୋର ବେଗମ କରିବାକୁ ଚାହେଁ । ( ତନୟାକୁ ଟାଣିଲ । ତନୟା ଚାପୁଡ଼ା ମାରିବା ଦ୍ୱାରା ମୁହଁରୁ ଲୁଗା ବାହାରିଗଲା । )

ତନୟା—କିଏ ? ଲଳା ଭାଇ ? ଏ ମାଁ. ଛି, ଛି, ଲଲାଭାଇ ତୁମେ ବଡ଼ ଦୁଷ୍ଟ ।

ଲଲାଟ—ତାନ । (ଦୁହେଁ ଦୁହିଁଙ୍କୁ ଆଲିଙ୍ଗନ କଲେ । )

ତନୟା—ତୁମକୁ ପୁଣି ଏ ବେଶ କିଏ ପିନ୍ଧାଇଲା ଲଲାଭାଇ ?

ଲଲାଟ—କାହିଁକି, ତୁ ।

ତନୟା—ମୁଁ ?

ଲଲାଟ –ହଁ, ତୁ ।

ତନୟା—ଯାଃ—କୁହନା ତୁମେ–

ଲଲାଟ—ହଁ, ତାନ । ଏସବୁ ତୋର ଦାନ । ସେ ଦିନର କଥା ଆଜି ବି ମୋର ସ୍ପଷ୍ଟ ମନେ ଅଛି ତାନ । ତୁଇ ମୋ ହାତରୁ ନହାଣି, ମୁଗୁର ଛଡ଼େଇ ନେଇ ତରବାରି ଧରେଇ ଦେଇଥିଲୁ । ତୁ କହିଥିଲୁ ନା, ତୁମେ ଭୀରୁ, କାପୁରୁଷ । ତୁମେ ଯଦି ମୋତେ ଭଲ ପାଅ, ମୋତେ ନେଇ ସଂସାର କରିବାର ସ୍ୱପ୍ନ ଦେଖୁଥାଅ—ତେବେ ସିନ୍ଦୂର ପରିବର୍ତ୍ତେ—ଶତ୍ରୁ ରକ୍ତରେ ମୋର ସୀମନ୍ତ ମଣ୍ଡିତ କରିବ । ମୁଁ ବି ସେଇଦିନ ପଣ କରି ବାହାରି ଯାଇଥିଲି—ବର୍ଗୀ ଆକ୍ରମଣର ମୁକାବିଲା କରିବାକୁ । ବର୍ଗୀମାନଙ୍କୁ ମୁଁ ଓଡ଼ିଶାର ସୀମା ପାର କରାଇ ଆଜି ଫେରି ଆସିଛି ତାନ । ଏ ବିଜୟ ମୋର ନୁହେଁ । ଏ ବିଜୟ ତୋର । ମୋର ପ୍ରାଣପ୍ରତିମା ତାନର ।

ଚନସ୍ପା— (କାନ୍ଦ) ଲଲ୍ଟଭାଇ

ଲଲ୍ଟ—ଏ କ'ଣ ? ତୋ ଆଖିରେ ଲୁହ କାହିଁକି ଚାନ୍ଦ ?

ଚନସ୍ପା— ମୁଁ ତୁମକୁ ବୁଝି ପାରୁନାହିଁ ଲଲ୍ଟଭାଇ ! ତୁମ ଶକ୍ତିର କଳନା କରି ପାରୁନାହିଁ । କେତେ ଗାଳି ଦେଉଛୁ । ଅପମାନ କରୁଛୁ । ତୁମେ ମୋତେ କ୍ଷମା କରିବ ନାହିଁ ଲଲ୍ଟଭାଇ ?

ଲଲ୍ଟ—ଚାନ୍ଦ । ଛିଃ, ମୋର ସୁନା ଭଉଣୀଟା ପରି, ଏମିତି କାନ୍ଦନ୍ତି ?

ଚନସ୍ପା—ନା, ତୁମେ ଆଗ କୁହ । ମୋତେ କ୍ଷମା କରିଛ ।

ଲଲ୍ଟ—ଏଥିରେ କ୍ଷମାର ପ୍ରଶ୍ନ ନାହିଁ ଚାନ୍ଦ । ନାରୀ ହେଉଛି ପୁରୁଷର ଶକ୍ତି । ନାରୀର ପ୍ରେରଣା ବିନା ପୁରୁଷ ନିଷ୍ପ୍ରାଣ, ଜଡ଼ । ତୋ କଥା ରଖି ପାରୁଛି । ତୋତେ ତୋ ପ୍ରେମର ପ୍ରକୃତ ମର୍ଯ୍ୟାଦା ଦେଇ ପାରୁଛି ।

( ଆଖିରେ ଲୁହ )

ଚନସ୍ପା— ତୁମେ— ତୁମେ କାନ୍ଦୁଛ ଲଲ୍ଟଭାଇ ?

ଲଲ୍ଟ—ତୁ କାନ୍ଦୁଛୁ ଯେ ?

ଚନସ୍ପା—କାହିଁ—ନା ତ । (ଲୁହ ପୋଛୁ)

ଲଲ୍ଟ—ହୁଁ, ନା ତ ? ତା ହେଲେ ଟିକଏ ହସିଦେଲୁ ।

ଚନସ୍ପା—(ହସି) ଏଇତ ହସୁଚି । ଆଚ୍ଛା ଲଲ୍ଟଭାଇ, ତୁମେ ମୋତେ ଅସଲ କଥାଟା କହିଲ ନାହିଁ ।

ଲଲ୍ଟ—କ'ଣ ?

ଚନସ୍ପା—ତୁମକୁ ଏ ବେଶ ପିନ୍ଧାଇଲା କିଏ ?

ଲଲାଟ—ଆରେ ହଁ ତ ! ମୁଁ ଏକାବେଳକେ ଭୁଲି ଯାଇଛୁ । ଶାହାଜାଦା ସିରାଜଉଦ୍ଦୌଲା ।

ଚନ୍ଦ୍ରା—ସିରାଜଉଦ୍ଦୌଲା ? ?

ଲଲାଟ—ମୁଁ ଯେ ବର୍ଗୀମାନଙ୍କୁ ପରାସ୍ତକରି ଓଡ଼ିଶାର ସୀମା ପାର କରାଇଦେଲି । ସେଥିପାଇଁ ମୋ ଉପରେ ସନ୍ତୁଷ୍ଟ ହୋଇ ମୋତେ ରାଇବଣିଆର ରାଜା କରିଛନ୍ତି ।

ଚନ୍ଦ୍ରା—ଏ ମା, ତୁମେ ରାଜା ହୋଇଛ ? ଇସ୍‌ରେ କି ମଜା !

ଲଲାଟ—ଆଜି ମୁଁ କ'ଣ ତୋତେ ଖାଲି କହୁଥିଲି ରାଣୀ କରିବି ବୋଲି ।

ଚନ୍ଦ୍ରା—ମୋର ରାଣୀ ହେବାର ଦରକାର ନାହିଁ । ମୋର ସେହି ଚାନ୍ଦ ହେବା ଭଲ ।

ଲଲାଟ—ବାରେ, ମୋତେ ରାଜା କରାଇ ଦେଇ ତୁ ଚାନ୍ଦ ହୋଇ ରହିବୁ ?

ଚନ୍ଦ୍ରା—ହଁ, ମୁଁ ମୋର ସେଇ ଚାନ୍ଦ ହୋଇ ରହିବ ।

ଲଲାଟ—ସେ କଥା ହୋଇପାରିବ ନାହିଁ । ତୋତେ ମୋର ରାଣୀ ହେବାକୁ ପଡ଼ିବ ।

ରତ୍ନେମତ—(ଭିତରୁ) ରାଜା ସାହେବ !

ଲଲାଟ—ଏଇ ମୁଁ ବାହାରିଲି ।

ଚନ୍ଦ୍ର—ବାହାରିଲ । ପୁଣି କୁଆଡ଼େ ?

ଲଲାଟ—ଶାହାଜାଦା ସିରାଜଉଦ୍ଦୌଲା ତାଙ୍କ ସୈନ୍ୟସାମନ୍ତଙ୍କୁ ନେଇ ଏଇ ବାଟେ ଫେରିବେ । ଆଜି ମୋତେ ସଙ୍ଗରେ ନେଇ ରାଇବଣିଆର ସମସ୍ତ ଦାୟିତ୍ୱ ବୁଝାଇ ଦେଇଯିବେ । ମୁଁ ଶୁଣିଲି ଚାନ୍ଦ—

ଚନସ୍ମା—ବେଶ୍ ଯାଅ । ରାଜା ହୋଇଛ ଯେତେବେଳେ ଯିବାକୁ ତ ହେବ । ( ଲଲାଟ ହସିଛି ) ନା, ଲଲ ଭାଇ, ତୁମେ ଯିନା ହସୁଛ ? କିନ୍ତୁ ମୋର ଭାରି ଭୟ ହେଉଛି ।

ଉଦେମନ୍—(ଭିତରୁ) ରାଜା ସାହେବ !

ଲଲାଟ—ଏଇ ବୋଧହୁଏ—ସେମାନେ ଆସିଗଲେ ।

ଚନସ୍ମା—ସତେ ତ । ଏଇନେ କ'ଣ ହେବ ଯେ ?

ଲଲାଟ—କ'ଣ ଆଉ ହେବ ? ମୋତେ ଯିବାକୁ ହେବ ।

ଚନସ୍ମା—ଲଲ ଭାଇ, ତୁମେ ମୋତେ ଭୁଲିଯିବ ନାହିଁ ତ ?

ଲଲାଟ—ହେ—ପାଗଳ !

ଚନସ୍ମା—ସତରେ ଲଲ ଭାଇ, ତୁମେ ଯଦି ମୋତେ ଭୁଲିଯାଅ; ତା'ହେଲେ ଦେଖିବ···

ଲଲାଟ—ତୁ ମୋତେ ବିଶ୍ୱାସ କରୁନୁ ଚାନ ?

ଚନସ୍ମା—କମିତି କରିବ କୁହ ତୁମେ ତ ଆଗର ସେଇ ଶିଲ୍ପୀ ଲଲଭାଇ ହୋଇ ନ; ତୁମେ ଯେ ଏଇନେ ରାଜା ଲଲାଟେନ୍ଦୁ ମାନ୍ଧାତା !

ଲଲାଟ—ଚାନ !

ଚନସ୍ମା—ତୁମେ ତ ଚାଲିଯିବ ଦୂରକୁ । 'ରାଜବୈଭବରେ ବୁଡ଼ି ରହିବ । ହେଲେ ମୁଁ କ'ଣ ସମ୍ବଳ କରି ବଞ୍ଚିରହିବ ? ପାରିବ, ପାରିବ; 'ତୁମେ ଯିବା ପୂର୍ବରୁ ମୋ ସୀମନ୍ତରେ ସିନ୍ଦୂର ଲଗାଇ ।

ଲଲାଟ—ତୁ ମୋତେ ହସାଇଲୁ ଚାନ, ହେଉ ହେଲା । ଯାଆ, ଧୂପ, ଦୀପ ଚନ୍ଦନ, ସିନ୍ଦୂର ସଜାଡ଼ି ଆଣ । ଆଉରି ଯା ଚାହୁଁଛୁ କ'ଣ ?

ରହେମତ୍—କୋଇ ହୈ ?

( ଚାନ୍ଦ ଚାଲିଗଲା । )

ଲଲାଟ—କିଏ ? ଭିତରକୁ ଆସ ।

ରହେମତ୍—( ଆସି ) ରାଜାସାହେବ, ଶାହାଜାଦା ଆପଣଙ୍କୁ ରାସ୍ତାରେ ଅପେକ୍ଷା କରୁଛନ୍ତି ।

ଲଲାଟ—ରାସ୍ତା ଉପରେ ଶାହାଜାଦା ? ଆରେ, ନା ନା ଚାଲ ।

( ଦୁହେଁ ଚାଲିଗଲେ । )

( ଚନ୍ଦ୍ରା ପୂଜା ଥାଳ ହାତରେ ଆସିଛି । ଲଲାଟଙ୍କୁ ନ ଦେଖି ଥାଳ ହାତରୁ ଖସିଛି ।)

ଲଲାଭାଇ ତୁମେ ଚାଲିଗଲ । ତୁମେ ଚାଲିଗଲ ଲଲାଭାଇ ! ତୁମ ଚାନ୍ଦକୁ ଏଠି ଏକା ଛାଡ଼ିଦେଇ ତୁମେ ରାଜା ହେବାକୁ ଚାଲିଗଲ ! ବେଶ୍ ଯାଅ । ତୁମ ଯାତ୍ରାପଥରେ ଫୁଲ ଚନ୍ଦନ ପଡ଼ୁ । ହେଲେ ଲଲାଭାଇ ତୁମ ଚାନ୍ଦକୁ କେବେ ଭୁଲିଯିବନି ? ତୁମଛଡ଼ା ତା' ଜୀବନରେ କିଛି ବୁଝିନ, କିଛି ଜାଣିନ ।

( ବାହାରୁ ଏହି ସମୟରେ ଜୟ ଶାହାଜାଦା ସିରାଜଙ୍କ ଜୟ, ଜୟ ପାଇକ ବୀର ଲଲାଟେନ୍ଦୁଙ୍କର ଜୟ ଏବଂ ପାଇକ ସର୍ଦ୍ଦାର ଶତ୍ରୁଘ୍ନଙ୍କ ଜୟ । ଚନ୍ଦ୍ରା ଫୁଲ ଗୋଟାଇ ରଖିଛି, ଧୂପ ଲଗାଇଛି । ସିନ୍ଦୂର ନିଜ ମଥାରେ ଦେଇ ଠାକୁରଙ୍କ ଉଦ୍ଦେଶ୍ୟ ପ୍ରଣାମ କଲାବେଳେ )

( ଅନ୍ଧାର )

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ସିରାଜଙ୍କ କକ୍ଷ-ଅସ୍ଥିର ପଦ-
ସ୍ୱରଣ-ମଝିରେ ମଝିରେ ସୁରା-
ପାନ-ଭିତରୁ ଭାସିଆସୁଥାଏ
କେଇପଦ କଥା ଅସ୍ପଷ୍ଟର··· ]

ତନସ୍ୱୀର ସ୍ୱର—ଦୁର୍ଦ୍ଧର୍ଷଙ୍କୁ ପାଇକ କୁଳର ଝିଅକୁ ଉପଦେଷ୍ଟା ରୂପେ ପାଇବାକୁ ହେଲେ—ଆପଣଙ୍କ ଶାହାଜାଦାଙ୍କୁ ସାତଜନ୍ମ ତପସ୍ୟା କରିବାକୁ ପଡ଼ିବ ।

ସିରାଜର ସ୍ୱର ସାତ ଜନ୍ମ ?···

ତନସ୍ୱୀର ସ୍ୱର—କ'ଣ ଦେଖୁଛନ୍ତି ?

ସିରାଜର ସ୍ୱର – ତୁମେ ଖୁବ୍ ସୁନ୍ଦରୀ । ଠିକ୍ ଯେମିତି ନୀଳ ମେଘର ଚପଳା । ତୁମଭଳି ବିଚକ୍ଷଣ ବୁଦ୍ଧିମତୀଙ୍କୁ ଉପଦେଷ୍ଟା ରୂପେ ପାଖରେ ପାଇଲେ ଶାହାଜାଦାଙ୍କ ବହୁତ ଲାଭ ହୋଇ-ପାରନ୍ତା

ସିରାଜ—ତନସ୍ୱୀ !

(ଏ ସବୁ ଆଲେସ୍ୱା ବନ୍ଦ ଝରକା ପଛପଟେ ଲକ୍ଷ୍ୟ କରୁଥିଲେ । ହଠାତ୍ କହିଉଠିଛି—)

ଆଲେସ୍ୱା—ହମ୍ ଉସ୍ ଜଗହ ପର ହେଁ । ଯହାଁ ହମାରି ଖବର ହମ୍‌କୋ ନେହିଁ ମିଲତି ( ନୃତ୍ୟଗୀତ ପରେ । )

କ'ଣ ହୋଇଛି ଶାହାଜାଦା ? ବିଜୟୀ ବୀରଙ୍କର ଦୀପ୍ତ ମୁଖରେ ଆଜ ଚିନ୍ତାର ରେଖା ଫୁଟିଉଠିଛି ଯେ ? ଚଞ୍ଚଳ ମନ । ଦୃଷ୍ଟି ଉଦାସ । ଗତି ଅସ୍ଥିର । ଏ ପରିବର୍ତ୍ତନ ଦେଖି ମନେ ହେଉଛି – ଶାହାଜାଦା କୌଣସି ମୂଲ୍ୟବାନ୍ ବସ୍ତୁ ହଜେଇ ବିବ୍ରତ ହୋଇ ପଡ଼ିଛନ୍ତି ?

ସିରାଜ—ତୁମେ ଠିକ୍ ଅନୁମାନ କରିପାରୁଛୁ ଆଲେୟା । ମୁଁ ଯାହା ହରେଇଛି—ତା'ର ମୂଲ୍ୟ କଳନା କରିହେବ ନାହିଁ ।

ଆଲେୟା—ସତେ ? ସେ କ'ଣ ଶାହାଜାଦା ? ଆପଣଙ୍କ ସେ ହୀରା ମୁଦି ? ନା, ସେ ଅଙ୍ଗୁଠି ? ଆଜ କ'ଣ ସେ ମୁକ୍ତାର ମାଳା । ନା, ସେ ବ ତ ଅଛି ? ତେବେ ?

ସିରାଜ—ନା ଆଲେୟା-ମୁଁ ଯା ହରେଇଛି—ସେ ହୀରା, ମାଳା, ମୋତି ମାଣିକ୍ୟ ଅପେକ୍ଷା ଅଧିକ ମୂଲ୍ୟବାନ୍ ।

ଆଲେୟା—ଶାହାଜାଦାଙ୍କ ସେବାରେ ଏତେ ବର୍ଷ ଧରି ନିଜକୁ ଉତ୍ସର୍ଗ କରି ଆସିଛି । ଶାହାଜାଦାଙ୍କ ମନରେ ଏପରି କୌଣସି ଗୋପନ କଥା ନାହିଁ—ଯାହା ଆଲେୟାକୁ ଅଜଣା । ମୁଁ ଜାଣି ପାରିଛି—ଆପଣଙ୍କ ଅସ୍ଥିରତାର କାରଣ । କୌଣସି ସୁନ୍ଦରୀ ରମଣୀ ଆପଣଙ୍କ ବହୁମୂଲ୍ୟ ହୃଦୟ ରତ୍ନଟି ଚୋରିକରି ନେଇଛି । ନୁହେଁ ଶାହାଜାଦା ?

ଇମାମ୍—କହନ୍ତୁ, ଶାହାଜାଦା, ଏ ସାମ୍ରାଜ୍ୟର କେଉଁ ସୁନ୍ଦରୀ ରମଣୀ ଆପଣଙ୍କ ବିଳାସକକ୍ଷ ପାଇଁ ଆବଶ୍ୟକ ? ଛଳେ ବଳେ ଅଥବା କୌଶଳେ ତାକୁ ଏଠାରେ ହାଜର କରାଇ ଦେବି ।

ଆଲେୟା—କେତେ ସୁନ୍ଦରୀ ରାତିକ ପାଇଁ ଆସି ଇନାମ ନେଇ ଫେରି ଯାଇଛନ୍ତି । ଶାହାଜାଦାଙ୍କ ପାଇଁ ବା କେଉଁ ରମଣୀ

ନାହିଁ ହେବ ? ବଳ ପ୍ରୟୋଗରେ ସେ ଠିକ୍ ବାଟକୁ ଆସିବ ।

ସିରାଜ—ଆଲେୟା, ମୋ ପ୍ରାଣର ଆଲେୟା—ତୁମ ପାଖରେ ମୋ ଅନ୍ତରର କୌଣସି ଗୋପନୀୟ କଥା ଛପି ରହି ପାରିନାହିଁ । ମୁଁ ଯେ କାହିଁକି ଚିନ୍ତିତ—ସେ କଥା ତୁମେ ଠିକ୍ କରି ପାରିବ ?

ଇମାମ୍ }
ଆଲେୟା } କହନ୍ତୁ ଶାହାଜାଦା, ସେ କିଏ ?

ସିରାଜ—ଯେଉଁ ଦିନ ସାଲନ୍ଦୀ ଜଳସ୍ରୋତରୁ ଆମ ଧଳାହସ୍ତୀ ଐରାବତ ମୋତେ ସଙ୍ଜ୍ଞାହୀନ ଅବସ୍ଥାରେ ଉଦ୍ଧାର କରି ପାଇକ ସର୍ଦ୍ଦାର ଶିବ ଶଙ୍କରଙ୍କ ପ୍ରାଙ୍ଗଣରେ ଶୁଆଇ ଦେଇ ଆସିଲା— ସେହିଦିନ ମୋ ଜୀବନରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ଶିବ ଶଙ୍କରଙ୍କର କନ୍ୟା ଅନିନ୍ଦ୍ୟ ସୁନ୍ଦରୀ ତନୟାଙ୍କ ସେବା ଯତ୍ନରେ ମୁଁ ଆରୋଗ୍ୟ ଲାଭକଲି । ସେଇ ତନୟା ମୋର ମନକୁ ଅସ୍ଥିର ଚଞ୍ଚଳ କରି ତୋଳିଛି । ଖାଲି ତା'ର ରୂପ ନୁହେଁ ତା'ର କଥାବାର୍ତ୍ତା, ଚାଲିଚଳଣ, ମୋତେ ମୁଗ୍ଧ କରିଛି । ମୋର ହୃଦୟରେ ଆଲୋଡ଼ନ ସୃଷ୍ଟି କରିଛି ।

ଇମାମ୍—ଓଃ, ସେଇଥିପାଇଁ ଆପଣ ଏତେ ବ୍ୟସ୍ତ । ତନୟା ଅପେକ୍ଷା କେତେ ସୁନ୍ଦରୀ ଷୋଡ଼ଶୀ ଆପଣଙ୍କ ନିର୍ଦ୍ଦେଶରେ ମୁଁ ଦଣ୍ଡକରେ ହାଜର କରାଇ ଦେବି । ଆଜ ପାଇଁ ବି କେତେ ଜଣ ଅପେକ୍ଷା କରିଛନ୍ତି ।

ସିରାଜ —ନା, ଇମାମ୍ । ସେ ପିପାସା ଆଜ ମୋର ନାହିଁ । ମୁଁ ଆଜ ଅସ୍ଥିର । ଚଞ୍ଚଳ । ମୁଁ କିଛି ଚାହେଁ ନା । କେବଳ ତନୟାକୁ ନିଜ ପାଖରେ ପାଇବା ପାଇଁ ଚାହେଁ । ପାରିବ ଆଲେୟା, ? ପାରିବ ଇମାମ୍ ?

ଇମାମ୍
ଆଲେଖ୍ୟା } —ନିଶ୍ଚୟ ପାରିବୁ ଶାହାଜାଦା ।

ସିରାଜ—କିନ୍ତୁ, ସାବଧାନ । ପାଇକ କନ୍ୟା ସେ । ଧମକ ଦେଇ କିମ୍ବା ବଳାତ୍କାରରେ ତାକୁ ଆଣିବା ସମ୍ଭବ ନୁହେଁ ।

ଇମାମ୍—ସେ ଦାୟିତ୍ୱ ଆମ ଉପରେ ଦିଅନ୍ତୁ ଶାହାଜାଦା । ଆମେ ତା'ର ବ୍ୟବସ୍ଥା କରିବୁଁ ।

ଆଲେଖ୍ୟା—ସେ କ'ଣ ନାରୀ ଜାତିର ବାହାରେ । ସେ ବୋଧହୁଏ ଏ କଥା ଜାଣେ ନାହିଁ ଯେ, ଆପଣ ଏ ସାମ୍ରାଜ୍ୟର ଭବୀ ଅଧୀଶ୍ୱର ୟ ଯେବେ ଜାଣିବ, ସେ ତେବେ ଏତେ ବଡ଼ ସୌଭାଗ୍ୟକୁ କେବେ ହେଲେ ପାଦରେ ଠେଲି ଦେଇ ପାରିବ ନ ।

ସିରାଜ—ତୁମେ ତାକୁ ଦେଖି ନାହିଁ ଆଲେଖ୍ୟା । ତନୟା ଏକା-ବେଳକେ ଅନ୍ୟ ଉପାଦାନରେ ଗଢ଼ା ।

ଆଲେଖ୍ୟା—ଆଲେଖ୍ୟା ନାରୀ । ନାରୀର ମନ ସେ ବେଶ୍ ବୁଝେ । ଆପଣ ଚିନ୍ତା କରନ୍ତୁ ନ ଶାହାଜାଦା । ତନୟାକୁ ଆପଣଙ୍କ ପାଖରେ ପହଞ୍ଚାଇବା ଦାୟିତ୍ୱ ଆମ ଉପରେ । କ'ଣ କହୁଛ ଇମାମ ?

ଇମାମ—ଶାହାଜାଦାଙ୍କ ପାଇଁ ଆସମାନରୁ ତ୍ତର ଧରି ଆଣିବ । ପାଇକ ଝିଅଟି ତ କାହିଁ ଛାର । ତୁମେ ମୋ ସଙ୍ଗରେ ଏଇଲେ —ଆଲେଖ୍ୟା ବିବି ।

ଆଲେଖ୍ୟା—ବେଶ୍ ଆସ । ସଙ୍ଗେ ସଙ୍ଗେ ପ୍ରସ୍ତୁତ ହୋଇପଡ଼ । ଆମେ ମୁର୍ଶିଦାବାଦ ଯିବା ପୂର୍ବରୁ ଯେ କୌଣସିମତେ ତନୟାକୁ ଶାହାଜାଦାଙ୍କ ପାଖେ ଭେଟି ଦେବାକୁ ପଡ଼ିବ ।

ସିରାଜ —ଆଲେୟା ! ତୁମକୁ ମୁଁ କ ଇନାମ ଦେବ ଆଲେୟା ।

ଆଲେୟା—ଆପଣ ତ ମୋତେ ସବୁ ଦେଇଛନ୍ତ ଶାହାଜାଦା । ମୁଁ ଆଗେ ଆପଣଙ୍କୁ ଇନାମ ଦେଇପାରେ । ଆସ ଇମାମ୍ ଉଦ୍ଧକ ପିବାପାଇଁ ପ୍ରସ୍ତୁତ ହେବାକୁ ପଡ଼ବ ।

(ସଲମ କଣ ପ୍ରସ୍ଥାନ)

( ଅନ୍ଧାର )

## ଦ୍ୱିତୀୟ ଦୃଶ୍ୟ

[ ନଈକୂଳ — ଚନ୍ଦ୍ରା ଗୀତ ଗାଉଛି — ଗୀତ ଶେଷରେ ସୁଭଦ୍ରା ଆସିଛି ]

ସୁଭଦ୍ରା—ଚାନ ! ତୋତେ ଆଉ କେତେ ବୁଝାଇବ କହିଲୁ ? ଏମିତ ନ ଖାଇ ନ ପିଇ ତୋ ଅବସ୍ଥା କ'ଣ ହେଲଣି ? ନିଜ ଆଡ଼କୁ ଟିକଏ ନଜର ପକାଇଲେ ସିନା ଜାଣିବୁ !

ଚନ୍ଦ୍ରା—କାହିଁକି ଆଈ ? ମୋର କ'ଣ ହୋଇଛି କି ?

ସୁଭଦ୍ରା ଆଲୋ ଟୋକୀ, ତୋ ଆଈ ବି ଦିନେ ତୋରି ବୟସର ଥିଲା । ତାକୁ ଆଉ ଭୁଲେଇଲେ କ'ଣ ହେବ ? ଲଲି ତ ଯାଇ ରାଇବଣିଆରେ ରଜା ହୋଇ ବସିଲା । ତୁ ଏଠି ବସି ଇମିତି ଝୁରି ଝୁରି ଶୁଖିଲେ କ'ଣ ସେ ଫେରି ଆସିବ ?

ଚନ୍ଦ୍ରା—ଆସିବେ ନାହିଁ ? ସତ କହୁଛୁ ଆଈ, ମୋ ଲଲିଭାଇ ମୋତେ ଏକାବେଳକେ ଭୁଲି ସେଠି ରହିଯିବେ ?

ସୁଭଦ୍ରା—ଆଲୋ ମା, ସେ ଏଇନେ ରଜା । ତାଙ୍କ ଆମ ଭିତରେ ଆକାଶପାତାଳ ଫରକ; ତେବେ ତୋ ବାପା କହୁଥିଲା ସେ କୁଆଡ଼େ ଚିଠି ଦେଇଥିଲା, କାମଦାମ ଯୋଗୁଁ ଆସି ପାରୁନାହିଁ, ସମୟ ପାଇଲେ ଆସିବ ।

ଶବ୍ଦଶଲ୍ୟ—(ବାହାରୁ) ଚାନ, ଚାନ···

ସୁଭଦ୍ରା—ହେଇ ତୋ ବାପା ଏଆଡ଼େ ଆସିଲଣି, ମୁଁ ଯାଏ । ତୁ ଚଞ୍ଚଳ ଗାଧୋଇ ପାଣି ନେଇଆ । ସଞ୍ଜ ହୋଇ ଆସିଲାଣି ।

( ପ୍ରସ୍ଥାନ )

ଶତ୍ରୁଶଲ୍ୟ— ତା'ନା, ମୁଁ ଏଇନେ ବାହାରିଣିଆ ଯାଉଛି । କାଲି ଫେରି ଆସିବି, କଲଷ୍ଟର ଚିଠି ଦେଇ ଡକାଇଛି । ବଡ଼ ଜରୁରୀ କାମ ଅଛି ବୋଲି ଲେଖିଛି ।

ତନସ୍ନା—ସଞ୍ଜ ହୋଇ ଆସିଲାଣି ପରା ବାପା, ପୁଣି ମେଘଟା ଉଠାଇଛି, ଏତେବେଳେ ଇମିତ ବାହାରିଛ ? ତା ଛଡ଼ା ତୁମେ କାହିଁକି ଯିବ ଯେ ? ରଜା ହୋଇଗଲେ ବୋଲି ସେ ତ ସମସ୍ତଙ୍କୁ ଭୁଲିଗଲେ, ତୁମର କ'ଣ ଦରକାର ତୁମେ ସେଠାକୁ ଯିବ ।

ଶତ୍ରୁଶଲ୍ୟ– –ତୁ–ମା–ତା ଉପରେ କେତେ ବଡ଼ ଦାୟିତ୍ୱ ଲଦି ଦିଆଯାଇଛି ତୁ ବୁଝି ପାରୁନୁ ନାହିଁ । ତୁ ଇମିତ ଅଭିମାନ କଲେ କ ରାଗିଲେ କଣ ଚଳିବ ? ଆଚ୍ଛା, ମୁଁ ଯାଉଛି ତାକୁ କହିବି, ସେ ଯିମିତ ଶୀଘ୍ର ଆମ ବସ୍ତିକୁ ଆସି ବୁଲିଯିବ । ତୁ ଯା ମା । ପାଣି ନେଇ ଘରକୁ ଯା । ମେଘଟା ଉଠି ଆସିଲାଣି ମୁଁ ଯାଏ ।

(ପ୍ରସ୍ଥାନ)

( ତନସ୍ନା କଳସୀ ନେଇ କଣା ଭିତରକୁ ଚାଲି ଆସିଲେ ଆଲେସ୍ନା, ଇମାମ ଓ ସଲାଉଦ୍ଦିନ )

ଇମାମ— କଣ ଦେଖିଲ ?

ଆଲେସ୍ନା—ହଁ ସେଇ ଝିଅଟି ।

ଇମାମ—ବା, ଚଢ଼ଆ ପକଡ଼ଗଯ଼ା ।

ଆଲେସ୍ନା—ନା କାମଟା ଏତେ ସହଜ ନୁହେଁ । ସଲାଉଦ୍ଦିନ—ତୁମେ ଏପଟେ ଲୁଚିଯାଅ, ଇମାମ ତୁମେ ଏଇ ଗଛ ଆଢ଼ୁଆଳରେ

ଲୁଚ ରହିବ । ଦେଖି ପାରୁଛ ଅନ୍ଧାର ସହିତ ଗୋଟେ ଝଡ଼ କମିତ ମାଡ଼ି ଆସୁଛି । ଚଢ଼ଆ ଗାଧୋଇ ଉଠିବା ସଙ୍ଗେ ସଙ୍ଗେ ମୋତେ ଗୋଟେ ସୁନ୍ଦର ଅଭିନୟ କରିବାକୁ ପଡ଼ିବ ।

ଇମାମ—ସେଠା ତ ତୁମେ ଖୁବ୍ ସୁନ୍ଦର କରିପାର । ଜୀବନରେ କେତେ କମ୍ ଅଭିନୟ କଲଣି । ଆଚ୍ଛା, ଆଲେସ୍ଯା ବିବି ଆଜି କଣ କରିବ ।

ଆଲେସ୍ଯା—ଶୁଣ ଚାନ୍ଦେଲେ କହୁଛି । ସନ୍ଲିପ୍ତ ପକଡ଼ୋ ପକଡ଼ୋ କହି ଚତ୍କାର କରିବ । ଆଜି ତୁମେ ଇମାମ ଗଛ ଉହାଡ଼ରେ ରହି ବକ୍ଷସଙ୍କ ଭଳି ହସିବାକୁ ଆରମ୍ଭ କରିବ । କଣ, ପାରିବ ତ ?

ଇମାମ—ପାରିବନି—ଖୁବ୍ ପାରିବ, କାହାର ହସ ଦରକାର ? ମହମ୍ମଦ ଘୋରି ? ଆଲ୍ଲାଉଦ୍ଦିନ ଖିଲଜି ? ଔରଙ୍ଗଜେବ, କଂସ, ରାବଣ, ଦୁଃଶାସନ, ହାଃ ହାଃ ହାଃ ହାଃ···

ଆଲେସ୍ଯା—ହେ, ତୁମକୁ ଏସବୁ କାମରେ ଆଣିବା ଯାହା ମଲା କୁକୁରକୁ କାନ୍ଧରେ ପକାଇ ଶିକାର କରିବାକୁ ଯିବା ସେଇଆ । ଯାଓ ଯାଓ ଲୁଚଯାଓ—(ଇମାମ, ସନ୍ଲିପ୍ତ ଲୁଚିଗଲେ) ବଞ୍ଚାଓ, ବଞ୍ଚାଓ···

ତନୟା—(ପ୍ରବେଶି) କଏ—

ଆଲେସ୍ଯା—ମୋତେ ବଞ୍ଚାଓ ଭଉଣୀ । ବର୍ତ୍ତମାନ ବର୍ଗୀମାନେ ମୋ ପିଚ୍ଛା ଧରିଛନ୍ତି । (ଏହି ସମୟରେ ପକଡ଼ୋ ପକଡ଼ୋ ଓ ହସ ଶୁଭିଲା) ଏଇ ସେମାନେ ଆସିଗଲେ କୁହ ମୋର କଣ ହେବ ?

ଚନସ୍ମା—ତୁମେ କିଛି ଚିନ୍ତା କରନାହିଁ ଭଉଣୀ । ମୁଁ ଅଛି । ସେମାନଙ୍କର ଏତେ ସାହସ ଆମ ଗଡ଼ ଭିତରକୁ ପଶି ଆସିଲେଣି । ନିଆଁ ସଙ୍ଗରେ ଖେଳନା, ମୋ ସଙ୍ଗରେ ଆସ ଦେଖି ଆମର କିଏ କଣ କରୁଛି ।

( ଚନସ୍ମା ପିବା ସମୟରେ—
ମୂର୍ଖ ଦୁଇ ଜଣ ଆସି ଚନସ୍ମା
ମୁହଁରେ ଲୁଗା ଘୋଡ଼ାଇ—
ତାକୁ ଟେକି ନେଇଗଲେ )

( ଅନ୍ଧାର )

## ତୃତୀୟ ଦୃଶ୍ୟ

[ ସମୟ ରାତି-ଶହ୍ଣଶଙ୍ଖର ଘର ଅଗଣା-ସୁଭଦ୍ରା, ଲଲାଟ ଓ ଶହ୍ଣଶଙ୍ଖ କଥା ବାର୍ତ୍ତାରେ ବ୍ୟସ୍ତ ]

**ଲଲାଟ**—ନା-ନା, ସବୁ ମୋର ଦୋଷ ମଉସା । ଏସବୁ ମୋର ଯୋଗୁଁ ହେଲା । ମୁଁ ରାଇବଣିଆର ରାଜା ହୋଇ ଦାୟିତ୍ୱର ବୋଝ ମୁଣ୍ଡେଇ ଯେଉଁ ଭୁଲ କରିଛି, ଏସବୁ ତାର ଫଳ । ସେଇଥିପାଇଁ ତାନ ଆମକୁ ଛାଡ଼ି ଚାଲିଗଲା ।

**ସୁଭଦ୍ରା**—ତାକୁ ଫେରାଇ ଆଣ ବାପା, ମୋ ତାନକୁ ଛାଡ଼ି ମୁଁ ଦଣ୍ଡେ ବଞ୍ଚି ପାରିବ ନାହିଁ ।

**ଶହ୍ଣଶଙ୍ଖ**—ମୁଁ ଠିକ୍ ବୁଝିପାରୁଛି ଲଲାଟ, ତାନ ମୋର ନିଜ ଇଚ୍ଛାରେ ଘରୁ ଗୋଡ଼ କାଢ଼ିବା ଝିଅ ନୁହେଁ । କେହି ଦୁର୍ବୃତ୍ତ ଜବରଦସ୍ତ ତାକୁ ନେଇଯାଇ ଅଟକେଇ ରଖିଛି । ଆମ ବସ୍ତିର ପାଇକମାନେ ଚାରିଆଡ଼େ ଖୋଜି ଖୋଜି, ଖବର ନେଇ ସାରିଲେଣି । କେଉଁଠି ହେଲେ ତାର କିଛି ଖବର ମିଳୁନାହିଁ ।

**ଲଲାଟ**—ମୁଁ କିଛି ଠିକ୍ କରି ପାରୁନାହିଁ ମଉସା । ସିଂହର ଗୁହାରୁ ତାର ଛୁଆକୁ ହେରାଇ ନେବ ଏତେ ବଡ଼ ସାହସ କାହାର ହେଲା ? ଠିକ୍ ଅଛି, ଆପଣ ଧୈର୍ଯ୍ୟ ଧରନ୍ତୁ ମଉସା । ତାନକୁ ଖୋଜି ବାହାର କରିବା ପାଇଁ ମୁଁ ଆକାଶ ପାତାଳ ଏକ

କରିଦେବ । ଆମ ଭଦ୍ରକ ସୁବାର ପାଇକମାନଙ୍କୁ ଆଉ ମୋର ଖଇବଣିଆ ଗଡ଼ର ପାଇକମାନଙ୍କୁ ନେଇ ମୁଁ ବାହାରିଲି ମଉସା, ଆପଣ ମୋତେ ଆଶୀର୍ବାଦ କରନ୍ତୁ ମୁଁ ଯେପରି ନିର୍ବିଘ୍ନରେ ତାକୁ ଆପଣଙ୍କ ପାଖକୁ ଫେରାଇ ଆଣିପାରେ ।

ଶଙ୍ଖଶାର୍ଙ୍ଗ—କେବଳ ଉତ୍ତେଜନା ବଶବର୍ତ୍ତୀ ହୋଇ କୌଣସି କାର୍ଯ୍ୟ କରି ହୁଏନା ଲଲାଟ, ଯିବାକୁ ବାହାରିଛ ସମସ୍ତେ, ହେଲେ ଯିବ କେଉଁଠିକି ? କେଉଁଠିକି ଗଲେ ତାର ସନ୍ଧାନ ପାଇବ କିଛି ଭାବିଛ ?

ସୁଭଦ୍ରା—ତୁ ଯା ବାପ, ଯା ତାକୁ ତଞ୍ଚଲ ଫେରାଇ ଆଣ । ତାର ମା ମରିଯିବା ଦିନରୁ ନିଜ ହାତରେ ଏଡ଼ିକରୁ ଏଡ଼ୁଟିଏ କଲି-ମୁ ହିଁ ତାର ମା; ମୁଁ ସବାଶାଣ୍ଡ ସେଦିନ ତାକୁ ନଈକୂଳରେ କାହିଁକି ଏକା ଛାଡ଼ିଦେଇ ଆସିଲି । ଏସବୁ ପାଇଁ ମୁ ହିଁ ଦାୟୀ । ତୁ ଯା ପୁଅ ମାକୁ ମୋର ଯେମିତି ହେଉ ଖୋଜି ଆଣ । ତାକୁ ନ ଦେଖିଲେ ମୁଁ ଆଉ ବଞ୍ଚି ପାରିବ ନାହିଁ । (ପ୍ରସ୍ଥାନ)

ଶୁଭ—(ପ୍ରବେଶି) ଓଲଗି ସର୍ଦ୍ଦାର । ଆରେ ଲଲାଟେନ୍ଦୁ ! କଣ କିଛି ଖବର ମିଳିଲା ?

ଶଙ୍ଖଶାର୍ଙ୍ଗ—ନା, ତୁମେ କଣ କିଛି ଖବର ପାଇଲଣି ଶୁଭଦେବ ?

ଶୁଭ—ନା ସର୍ଦ୍ଦାର, କେଉଁଠୁ କିଛି ଖବର ପାଇଲି ନାହିଁ; ତେବେ ଗୋଟିଏ ଖବର ପାଇଲି ଯେ ଦୁର୍ବୃତ୍ତମାନେ ନିଶ୍ଚୟ ଜଳପଥରେ ତନୟାକୁ ଅପହରଣ କରି ନେଇଯାଇଛନ୍ତି ।

ଶଙ୍ଖଶାର୍ଙ୍ଗ—ଏକଥା ତୁମେ କିମିତି ଜାଣିଲ ?

ଶୁଭ—ଘାଟିଆ ଜଗୁ କହୁଛି ସେଦିନ ଝଡ଼ ଭିତରେ କାହାର "ବାପା ବାପା" ଚିତ୍କାର ନଦୀ ଭିତରୁ ଶୁଣିଛି ।

ଶଙ୍ଖଶଙ୍ଖ—ମା ତା ହେଲେ ଯିବାବେଳେ ମୋତେ ଡାକ ଡାକ ଯାଇଛି ନା ଶୁଭଦେବ ।

ଲଲାଟ—ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ମଉସା, ଆମକୁ ଏହାର ଭିତରୁ ଗୋଟାଏ କିଛି ଖୋଜ ବାହାର କରିବାକୁ ହେବ । ଆଚ୍ଛା ଶୁଭଭାଇ ! ଜଗୁଆ ଘାଟିଆ ନୌକାଟା କେଉଁ ଆଡ଼କୁ ଯାଉଥିଲା ବୋଲି କହୁଛି ।

ଶୁଭ—ମୁଁ ତାକୁ ସେକଥା ପଚାରିଥିଲି । ସେ କହିଲା ଝଡ଼ବର୍ଷା ବେଗ ସେତେବେଳେ ଏତେ ପ୍ରଖର ଥିଲା ଯେ ନଦୀ ଭିତରେ ନୌକାରେ କିଏ କୁଆଡ଼େ ଯାଉଛି ଜାଣିବା କଷ୍ଟକର ଥିଲା । ତେବେ ମୁଁ ଭାବୁଛି ଆମେ ଦୁହେଁ ଗୋଟେ ଶେଷ ଚେଷ୍ଟା କରିବା ।

ଲଲାଟ—କଣ କୁହ ଶୁଭ ଭାଇ ! ତୁମେ ଯାହା କହିବ ମୁଁ ତାହା କରିବାକୁ ପ୍ରସ୍ତୁତ ।

ଶୁଭ—ଜଳପଥରେ ଯାଇଛନ୍ତି ସେତେବେଳେ ମୁହାଣ ଦେଇ ସମୁଦ୍ରରେ ତ କୁଆଡ଼େ ଯାଇଥିବେ ।

ଲଲାଟ—ହଁ ତାତ ନିଶ୍ଚୟ ।

ଶୁଭ—ବଙ୍ଗୋପସାଗର ପୂର୍ବକୁ ଗଲେ ବ୍ରହ୍ମଦେଶ, ସେ ଆଡ଼କୁ ତ କଦାପି ଯିବେନି । ଯାଇଥିଲେ ଯାଇଥିବେ ଉତ୍ତରକୁ ନ ହେଲେ ଦକ୍ଷିଣକୁ । ଆଚ୍ଛା ଲଲାଟ ତୁମେ ଗୋଟେ କାମକର । ସମୁଦ୍ର କୂଳେ କୂଳେ ତୁମେ ଦକ୍ଷିଣକୁ ଯାଅ, ମୁଁ ଯାଉଛି ଉତ୍ତରକୁ । ଦେଖାଯାଉ ଭଗବାନଙ୍କ ଇଚ୍ଛା କଣ ।

ଶତ୍ରୁଶଲ୍ୟ—ଶୁଭଦେବ ଯାହା କହୁଛି କଥା ମନ୍ଦ ନୁହେଁ । ଶୁଭଦେବ, ବାବା ଲଲାଟ ! ମୋ ମୁହଁକୁ ଗୁହିଁ ତୁମେମାନେ ଏଇ ଶେଷ ଚେଷ୍ଟା କର । ମୋର ବ କାହିଁକି ମନେ ହେଉଛି ଜଗନ୍ନାଥଙ୍କ କୃପାରୁ ଏଥର ନିଶ୍ଚୟ ଗୋଟେ କିଛି ଖବର ମିଳିଯିବ ।

ଲଲାଟ—ଆପଣ ବ୍ୟସ୍ତ ହେବେନି ମଉସା । ମୁଁ ଏଇନେ ସମୁଦ୍ର କୂଳ ଦେଇ ଦକ୍ଷିଣକୁ ଗ୍ଲଲି, ତୁମେ ଉତ୍ତର ଦିଗକୁ ଯାତ୍ରା ଆରମ୍ଭ କରିଦିଅ ଶୁଭଭାଇ । (ପ୍ରସ୍ଥାନ)

ଶତ୍ରୁଶଲ୍ୟ—ଶୁଭଦେବ, ସାରା ଜୀବନଟା ଅତି ବିଶ୍ୱସ୍ତ ଅନୁଚର ଭାବରେ ତୁମେ ଛାଇପରି ମତେ ଅନୁସରଣ କରି ଆସିଛ ଆଜି ମୋର ଦୁର୍ଦ୍ଦିନରେ କିଛି ସାହାଯ୍ୟ କରିପାରିବ ?

ଶୁଭ—ମହାରାଜ ! ରାମଭକ୍ତ ହନୁମାନ ଭଳି ଆପଣଙ୍କ ଆଦେଶକୁ ସାରାଜୀବନ ମଥାପାତି ଗ୍ରହଣ କରି ସାରିଛି । ସୀତା ଠାକୁରାଣୀଙ୍କୁ ଠାବ କରିବାକୁ ଯାଇ ଗୋଟିଏ ବାନର ଯେତେବେଳେ ସାତ ସମୁଦ୍ର ତେର ନଈ ପାରିହୋଇ ସୁବର୍ଣ୍ଣ ଲଙ୍କାକୁ ଜାଳି ପୋଡ଼ି ଛାରଖାର କରି ଦେଇଥିଲା, ମୁଁ ଜଣେ ମଣିଷ ହୋଇ କଣ ମୋ ଭଉଣୀକୁ ଏକ ଦୁର୍ବୃତ୍ତ କବଳରୁ ଉଦ୍ଧାର କରି ପାରିବିନି । ଆପଣ ମୋତେ ଆଶୀର୍ବାଦ କରନ୍ତୁ, ମୁଁ ଯେପରି ଶୀଘ୍ର ତନୟାର ସନ୍ଧାନ ନେଇ ଫେରି ଆସେଁ । (ପ୍ରସ୍ଥାନ)

( ଅନ୍ଧାର )

## ଚତୁର୍ଥ ଦୃଶ୍ୟ

[ କୁଟୀର—ପ୍ରବେଶ କଲେ
ଅମର ଓ ମୁକ୍ତକେଶୀ ]

ମୁକ୍ତ—କ'ଣ ହେଲ ଯାଇ ପାରବ ନାହିଁ । ତୁମଭଳି ମଣିଷକୁ ନେଇ ଘରସଂସାର କରିବା ମୋର ଝକ୍‌ମାରି ହୋଇଛି । ତୁମ ଦେଇ କିଛି ହୋଇପାରିବ ନାହିଁ ।

ଅମର—କ'ଣ ହେଲ କିଛି ହୋଇ ପାରିବ ନାହିଁ । ଯୁଦ୍ଧ, ସନ୍ଧି, ପଳାୟନ, ଆତ୍ମରକ୍ଷା ସବୁଥିରେ ମୁଁ ଧୂରନ୍ଧର । ନ ହେଲ ବା ଆମର ପିଲପିଲ କିଛି ହୋଇନ ।

ମୁକ୍ତ—ଆହା, ହା, ଆଟିକାଟାକର ମୁହଁକୁ ସୁନ୍ଦରଷଟାକର ଲଜ୍ଜ ଥାଆନ୍ତା ।

ଅମର—ମୁକ୍ତା, ତୁମେ ପାରିଲନ, ତୁମେ ସ୍ୱାମୀ ଦେବତାର ଏତେ ପାଖରେ ଥାଇ ବି ତୁମେ ତାର ପୁରୁଷତ୍ୱକୁ ଆଜଯାଏ ଚହ୍ନି ପାରିଲ ନାହିଁ । ବସ୍ତି, ଗ୍ରାମ, ନଗର, ଦେଶ, ଦେଖିଲେ ଜାଣିଲେ, ଝୁରି ଝୁରି ମଲେ ।

ମୁକ୍ତ—ଆହା ମରିଯାଉଥାଏଁ କିନା, କି ଗୁଣବନ୍ତ ପୁରୁଷ, କେଉଁଥିରେ ରୂପରେ ନା ଗୁଣରେ, କେଉଁଥିକି ଖାଲି ସମସ୍ତେ ଝୁରି ଝୁରି ମରି ଯାଉଛନ୍ତି ? ହଇହେ ! ଯୁଦ୍ଧକୁ ସମସ୍ତେ ଗଲେ ଖଣ୍ଡାରେ କିନା ଗୁଡ଼େଇ ତୁମେ ଘରକୁ ପଳାଇ ଆସିଲ ସମସ୍ତ ସାଆନ୍ତଙ୍କ ଝିଅ ନୋଳବାରେ ବାସ୍ତ, ତୁମେ ଆସି ମୋ ପଛରେ ଲଗିଛ ।

ଅମର—ଆରେ ଆଚ୍ଛା କଥା, ଆଉ କାହା ପଛରେ ଲଗିବ ଯେ ? ଆଜି କିଏ ଅଛୁ, ପୁଅ ନା ଝିଅ ନଜର ବୋଲି ତ କେବଳ ତୁମେ । ସାଆନ୍ତଙ୍କ ଝିଅ ଖବର ବୁଝିବା ପାଇଁ କେତେ କେତେ ବଣ୍ୟସ୍ତ ଲୋକ ଅଛନ୍ତି ମୁଁ ଆଉ ଅଧିକ କ'ଣ କରିବ ? ନେଲେ ନେଇଥିବ ବର୍ଗୀ, ନହେଲେ ମୁସଲମାନ । ମୁଁ କ'ଣ ଯାଇ ସେ ହାଣୁଆଗୁଡ଼ାକ ହାବୁଡ଼ରେ ପଡ଼ି ଶେଷରେ ମୋର ଏଡ଼ି ପୈତୃକ ପ୍ରାଣଟାକୁ କଲବଲ ଛଟପଟ କରିବ । ମୋର ତୁମେ ଭଲ କି, ମୁଁ ଭଲ, ଘୋଡ଼ି କମ୍ବଲ ପଡ଼ିରହୋ, ଉପର ଉପର ଯାନେ ଦୋ ।

ମୁକ୍ତା—ଆହା ହା— ପାଇକ ପୁଅ ହୋଇ ଏମିତି ମାଇଚିଆ କିଏ ଅଛି ମ, ଦିନେ ଅଧେ ଯୁଦ୍ଧକୁ ଗଲ ତ ଯୁଦ୍ଧ ନ ସରୁଣୁ ପଳାଇ ଆସିଲ ।

ଅମର—ତୁମେ ମୋର ଅନ୍ତରର ବେଦନା ବୁଝିବନି ମୁକ୍ତକେଶୀ, ସେଗୁଡ଼ାକ ଭାବିବା ବେଳକୁ ମୋ ଛାତି ଫାଟିଯାଉଛି । ମୁଁ କାହିଁକି ପଳାଇ ଆସେ ଜାଣ ? କୋଳକୁ ତ ଗୋଟିଏ ହେଲେ କେହି ନାହିଁ । କହିଲ ଭଲା ଆମ ମୁହଁରେ ନିଆଁ ଦେବ କିଏ ? ନା, ନା, ମୁଁ ଆଜି ତୁମକୁ ବଇଦ ପାଖକୁ ନେଇ ପରୀକ୍ଷା କରାଇବ ।

ମୁକ୍ତା—ବଇଦ ପାଖକୁ ଯାଇ ଆଉ ଲଭ କ'ଣ ମ, ତୁମ କଥା ପରି ନିର ବଇଦ ସେଦିନ ଲୁଚିଲୁଚି କହୁଛି ।

ଅମର—କହୁଛି, କ'ଣ କହୁଛି ?

ମୁକ୍ତା—ତୁମର ପୁରୁଷପଣିଆ—

ଅମର—ନାହିଁ—ମୋର ପୁରୁଷତ୍ୱ ନାହିଁ ଏ କଥା ସିଏ କହୁଛି ?
ତୁମେ ଏତେଦିନଯାଏ ମୋତେ ଏ କଥା କହିନ କାହିଁକି ?
ଚାଲ ଚାଲ, ଆଜି ସେ ବଇଦ ପାଖକୁ—ଆଜି ନଶ ବଇଦର
ପାଳକ ମୋର ପାଳ, ଛାଡ଼ିବ ନାହିଁ । ଆଜି ଦେଖିବ—
ମୋର ପୁରୁଷତ୍ୱ ନାହିଁ କି ତାର ନାହିଁ । ଚାଲ ଚାଲ ଦେଖିବା
ଚାଲ ।

ମୁକ୍ତ—ତୁହେମ, ଟାଣି ପକଉଚ କାହିଁକି ? ବଇଦ କଣ କହିବ ମ ?
ଏ ବସ୍ତିଟାଯାକ ସବୁ ସମସ୍ତେ କହୁଛନ୍ତି ।

ଅମର—ମାର ସେ ଲୋକଙ୍କ କଥାକୁ ? ନଶ ବଇଦ ସବୁ ଲୁଟେଇ
କରି କହୁଚ । ଚାଲ ତା ପାଖକୁ, ଆଜି ମୁଁ ଦେଖିବି, ସେଇଟା
ବଇଦ ନା ମୋଚ ? ଚାଲ ।

ମୁକ୍ତ—ଏ, ଶୁଣ । ତାହେଲେ ତୁମେ କ'ଣ କହୁଛ ତୁମର ପୁରୁଷତ୍ୱ—

ଅମର—ଅଛି, ଅଲବତ ଅଛି ? ସାଙ୍ଘାତିକ ଭାବରେ ଅଛି ।

ମୁକ୍ତ—ପ୍ରମାଣ ଦେଇ ପାରିବ ?

ଅମର—କେତେ ନବ । ଟଣ୍ଡା, ଟଣ୍ଡା । ଚାଲ, ଚାଲ, ଏଇନେ
ମୋ ସାଙ୍ଗରେ ।

( ହାତ ଟାଣିଲା, ମୁକ୍ତକେଶୀ ହାତ
ଛୁଆଁଡ଼ି )

ମୁକ୍ତ –ସତେ, ତା ହେଲେ ମୋର ପାଖରେ ବୁଢ଼ା ବୁଢ଼ୀ ପାଣି
ପିଉଥିଲୁ ନା ପୋଡ଼ାମୁହାଁ ମରଦର ଏତେ ଗୁଣ । ସତେ
ଆଜିଯାଏଁ ଭୁଆଁ ବୁଲଉ ଥିଲୁ । ଆଜି ମୁଁ ତତେ ଦଉଚି
ରହ । ଗାତପଣ ?—

( ମୁକ୍ତା ଗୁଞ୍ଜୁଣୀ ଆଣି ଅମରକୁ
ମାରିବାକୁ ଗଲାବେଳେ)

ଅମର—(ରାଗି ତରବାରି କାଢ଼ି) ଏ ମୁକ୍ତକେଶୀ ମୁହଁ ସମ୍ଭାଳି କଥାବାର୍ତ୍ତା କର ।

ମୁକ୍ତ—କ'ଣ ତୁ ମତେ ତରବାରି ଦେଖାଉଚୁ ?

ଅମର—ଚୁପ୍ କର କଳଙ୍କିନୀ । ଖାଲି ମୁଇଁ ବୁଡ଼ ବୁଡ଼ ପାଣି ପିଉଚି ନା । ଆଉ ତୁ ସତୀ ସାବିତ୍ରୀ, ଜାଣେ ସବୁ କଥା ଜାଣେ ?

ମୁକ୍ତ—(ଛୁଞ୍ଚୁଣୀ ଉଠାଇ) ଜାଣିଚୁ, କଣ ଜାଣିଚୁ ରେ ମାଇଚିଆ ?

ଅମର—ମୁକ୍ତକେଶୀ ! ପୁଣି ସେଇକଥା । ମୁଁ ମାଇଚିଆ ନା ତୁ ବାଂଝ । ବଜାରୁ ଛିନ୍ନାଳି । ମୋତେ ଯୁଦ୍ଧକୁ ପଠେଇ ଦେଇ ଏଠି କୃଷ୍ଣଲୀଳା ଚାଲିଥିଲା ନା ? ପାପିନୀ ! ପାଇକ କୁଳ କଳଙ୍କିନୀ-ବାହାରି ଯା-ବାହାରିଯା ମୋ ଘରୁ ।······

ମୁକ୍ତ—କ'ଣ କହିଲୁ ? ଘରି ତ ଆସ୍ପର୍ଦ୍ଧା । ହକ ହାତ ଧରି ବାହା ହେଇଚ, କହୁଚୁ କ'ଣ ନା ବାହାରିଯା—

( ଛୁଞ୍ଚୁଣୀ ଛୁଟି ଦେଇଚି ଉପରକୁ ଏବଂ ଚାଲି ଯାଇଛି )

ଅମର—ଆହା, ଅପମାନ, ଅପମାନ ଏ ଅସହ୍ୟ, ଆଜ ଏ ଅପମାନ ଖାଲି ମୋର ନୁହେଁ । ସମସ୍ତ ସ୍ୱାମୀ ଜାତିର ଅପମାନ । ହେ ସ୍ୱାମୀକୁଳ ! ହେ ଦଶଦିଗପାଳ ! ଗୋଟାଏ ସ୍ୱାମୀର ମର୍ଯ୍ୟାଦା ରକ୍ଷାପାଇଁ ଆଜ ଅମର ଦେଖାଇବ ତାର ଅପୂର୍ବ ରଣ-କୌଶଳ । (ତରବାରି ବୁଲାଇ) ମୁକ୍ତକେଶୀ ଧର ଅସ୍ତ୍ର କର ରଣ । ନାହିଁ ଆଜ ପରିତ୍ରାଣ ।

( ଏହି ସମୟରେ ମୁକ୍ତକେଶୀ ଭିତରୁ ଜଳୁଥିବା ବାଉଁଶ ଗୋଟେ ଧରି ଆସିଛି ।)

ମୁକ୍ତ—କଅଣ କହିଲୁ—କଣ କହିଲୁ .ଅଲପେଇଶା, ତୁ ମତେ ମାରିବୁ ।

ଅମର—(ଚଳେପଡ଼ି) ରକ୍ଷାକର-ରକ୍ଷାକର ମୁକ୍ତକେଶୀ ରକ୍ଷାକର ।

ମୁକ୍ତ—ରକ୍ଷା ! ଆଜ ଆଉ ତୋର ରକ୍ଷା ନାହିଁ ।

(ବାଉଁଶ ଚାକୁ ଦେଖାଇ)

ଅମର—(ଚିତ୍କାର କରି) ରକ୍ଷାକର, ମୁକ୍ତକେଶୀ । ମୁଁ ଆଉ ତୁମର ଅବାଧ ହେବନି ।

ମୁକ୍ତ—ତୁହ ମୋ କଥା ମାନିବ ? ମୁଁ ଯାହା କହିବ ତା କରିବ ।

ଅମର—ହଁ ମାନିବ ।

ମୁକ୍ତ—ଚାଲ, ଚାଲ କହୁଛି । (ଯିବାବେଳେ)

( ଅନ୍ଧାର )

## ପଞ୍ଚମ ଦୃଶ୍ୟ

[ ରଙ୍ଗ ମହଲ, ସିରାଜ, ପଦଚାରଣ
କରୁଥାନ୍ତି —ଆଲେୟା ପ୍ରବେଶ ]

ସିରାଜ—ଆଲେୟା, ଖବର କ'ଣ ? ଆଲେୟା ତୁମେ ଜୟଯୁକ୍ତ ହୋଇଛ ନିଶ୍ଚୟ । ଚନ୍ଦ୍ରା ରାଜି ଛ ?

ଆଲେୟା—ନା ଶାହାଜାଦା । ଆପଣ ଠିକ୍ କଥା କହୁଥିଲେ । ଚନ୍ଦ୍ରା ଗାଇକ ଝିଅ । ବାଘୁଣୀକୁ ପୋଷ ମନେଇବା ଏତେ ସହଜ ନୁହେଁ ।

ସିରାଜ—କିନ୍ତୁ ଯେତେହେଲେ ସେ ଜଣେ ନାରୀ । ତୁମ ଭଳି ବିଚକ୍ଷଣା ବୁଦ୍ଧିମତୀ ନିକଟରେ ତାର ସମସ୍ତ ଆସ୍ଫାଳନ ହାର ମାନିବ, ଏ ବିଶ୍ୱାସ ମୋର ଅଛି ।

ଆଲେୟା—ମୁଁ ମୋର ସବୁ କୌଶଳ ପ୍ରୟୋଗ କରି ସାରିଛି । କିନ୍ତୁ ସେ ସିରାଜଦ୍ଦୌଲାଙ୍କ ନାମ ଶ୍ରବଣ ମାତ୍ରେ ଏକାବେଳେ ଜଳି ଉଠୁଛି । ଘୃଣାରେ ତାର ସର୍ବାଙ୍ଗ ଥରି ଉଠୁଛି । କୌଣସି କଥା ବୁଝିବା ଭଳି ଅବସ୍ଥା ତାର ରହୁ ନାହିଁ ।

ସିରାଜ—ତୁମ ପାଇଁ ଏ କିଛି ନୂଆ କଥା ନୁହେଁ । ଆଲେୟା ! ଅନେକ ଏହିଭଳି ଉଦ୍ଧତ ଝିଅଙ୍କୁ ତୁମେ ପୋଷା ମନେଇ ପାରିଛ । ତୁମ କଥାର ଯାଦୁଘରେ ଭୁଲି ନ ଯାଇ କେହି ଯେ ତୁମର ଅବାଧ ହୋଇପାରେ, ଏକଥା ମୁଁ ବିଶ୍ୱାସ କରିପାରୁ ନାହିଁ । ହୁଏତ ତୁମର ଚେଷ୍ଟାରେ ତ୍ରୁଟି ରହି ଯାଉଛି ।

ଆଲେୟୁା—ଚେଷ୍ଟାରେ ମୁଁ ତ୍ରୁଟି କରୁନାହିଁ ଶାହାଜାଦା ! କିନ୍ତୁ ଆପଣ ତ ମୋର ହାତ ବାନ୍ଧି ଦେଇଛନ୍ତି । ଭଲରେ ନ ହେଲେ ମନ୍ଦରେ ରାଜି କରାଇବାର କୌଶଳ ମୋତେ ବେଶ ଜଣା; ହେଲେ ତନୟା ପାଇଁ—

ସିରାଜ—ନା, ନା, ଆଲେୟୁା ! ତାକୁ କୌଣସି ପ୍ରକାର କଷ୍ଟ ଦେଇ ତୁମେ ରାଜି କରେଇବ ଏହା ମୁଁ ସହି ପାରିବିନି । ଆସମାନର ତାରା ସେ । ତାକୁ ପାଇବାକୁ ହେଲେ, ଆମକୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିବ । ଭଦ୍ରକ ପାଇକ ବସ୍ତିରେ ଯେଉଁଦିନ ତାକୁ ଦେଖିଲି, ତାର ଅସୀମ ସାହସ, ବିଚକ୍ଷଣ ବୁଦ୍ଧି, ଆଉ ଅନୁପମ ସୌନ୍ଦର୍ଯ୍ୟ ମୋତେ ମୁଗ୍ଧ କରିଛି । ସେଇଦିନ ମୁଁ ମନେ ମନେ ନିଷ୍ପତ୍ତି କରିଛି, ସେ ହେବ ମୋର ଭାବୀ ବେଗମ୍; ବଙ୍ଗ, ବିହାର, ଓଡ଼ିଶାର ସାମ୍ରାଜ୍ଞୀ ! ତାର ସେ କୁସୁମ କୋମଳ ଅଙ୍ଗରେ କୌଣସି ଆଘାତର ଜ୍ୱାଳା ମୁଁ ସହ୍ୟ କରି ପାରିବିନି ।

ଆଲେୟୁା—ଶାହାଜାଦା ତ ତନୟାକୁ ନେଇ ଭବିଷ୍ୟତର ସ୍ୱପ୍ନରେ ମଜଗୁଲ କିନ୍ତୁ ବେଗମ୍ ସାହେବା ଯେ ଧରା ଦେଉ ନାହାନ୍ତି ।

ସିରାଜ—ନା ଆଲେୟୁା, ତାକୁ ଧରିବାକୁ ହେବ । କୌଶଳ କରି ତାର ମନକୁ ଜୟ କରିବାକୁ ହେବ । ମୋର ଏ ଅସ୍ଥିର ହୃଦୟକୁ ତୁମେ କେବଳ ଶାନ୍ତ କରି ପାରିବ । ଆଲେୟୁା, ତୁମେ ଇନାମ୍ ମାଗିବ ମୁଁ ଦେବି । ଯାଅ ଚେଷ୍ଟାକର ।

( ଚାଲିଗଲେ )

ଆଲେୟୁା—(ସ୍ୱଗତ) ହୁଁ ଇନାମ ? ଆଲେୟୁା ତାର ନିଜର ସର୍ବନାଶ କରି ଇନାମ ନେବ । ତନୟା ହେବ ବେଗମ୍ ?

ଜହରତ—(ପ୍ରବେଶି) କଣ ଆଲେୟା ବିବି ? ଶାହାଜାଦାଙ୍କ ସଙ୍ଗେ ଆଳାପଟା ବେଶ ସୁଖପ୍ରଦ ହେଉଥିଲା ଜଣାପଡ଼ୁନାହିଁ ।

ଆଲେୟା—ସଲାମ ସେନାପତି ସାହେବ ।

ଜହରତ—କଣ ହେଇଚି ? ତୁମର ଗୋଲାପି ମୁହଁଟି ଝାଉଁଳି ପଡ଼ିଛି ? ମନଟା ଉଦାସ ଥିଲାପରି ଜଣା ପଡ଼ୁଛି ।

ଆଲେୟା—ସେନାପତି ସାହେବ । ନାରୀର ମନକଥା ବୁଝିବାକୁ ଏଇ ସାମ୍ରାଜ୍ୟରେ ଆପଣଙ୍କ ବ୍ୟତୀତ ଆଉ କେହି ନାହାନ୍ତି । ଯେଉଁ ଶାହାଜାଦା ମୋତେ କ୍ଷଣେ ନ ଦେଖିଲେ ପାଗଳ ହେଇ ଉଠୁଥିଲେ, ସେହି ଶାହାଜାଦା ଆଜି ଅନ୍ୟର ପ୍ରେମରେ !

ଜହରତ—ଜାଣିଛି ଆଲେୟା, ମୁଁ ସବୁ ଜାଣିଛି । ତୁମ ଅନ୍ତରର ବ୍ୟଥା ମୁଁ ଠିକ୍ ଧରି ପାରିଛି । ବ୍ୟସ୍ତ ହୁଅନା ସବୁ ଠିକ୍ ହେଇଯିବ । ସେନାପତି ଜହରତ କେବେହେଲେ ତୁମର ଶୁଖିଲା ମୁହଁ ଦେଖି ପାରିବନି, ତୁମେ ଯେ ମୋର ଜାନ୍‌-

(ହାତ ଧରିଲେ)

ଆଲେୟା—ପାରିବ, ପାରିବ ସେନାପତି ? ମୋତେ ଏ ଢଙ୍ଗରେ ସାହାଯ୍ୟ କରି ପାରିବ ? ଆମର ଚଲାପଥରୁ ଗୋଟି ଗୋଟି କରି କଣ୍ଟା ସଫା କରି ପାରିଲେ, ଆମର ଗନ୍ତବ୍ୟପଥ ସୁଗମ ହେବ । ତାପରେ ଆଲେୟା ବିବିକୁ ତୁମ ଛଡ଼ା ଆଉ କେହି ପାଇ ପାରିବେ ନାହିଁ ।

ଜହରତ—ଆଲେୟା ! ତୁମ ପାଇଁ ମୁଁ ଆଜି ସବୁ କିଛି କରିବାକୁ ପ୍ରସ୍ତୁତ ଅଛି । ମୁଁ ହେବି ଏ ସାମ୍ରାଜ୍ୟର ସମ୍ରାଟ । ଆଉ ତୁମେ ହେବ ମୋର ଭାବୀ ବେଗମ୍ ।

ଆଲେୟୁା — ସବୁ ହେବ ସେନାପତି ? ତେବେ ଆଗେ ତନସୁ୍ୟାକୁ ହତ୍ୟା କରିବାକୁ ହେବ । ତା ନ ହେଲେ ଶାହାଜାଦାଙ୍କୁ ଆମ ଅକ୍ତିଆରକୁ ଆଣିହେବ ନାହିଁ । ତୁମେ ମୋତେ ସାହାଯ୍ୟ କର । ଦେଖିବ ତୁମର ସମ୍ରାଟ ହେବାର ପଥ ମଧ୍ୟ ସୁଗମ କରିଦେବି ।

ଜହରତ—ଶୁଣ ଆଲେୟୁା ମୋ କଥା ମାନି ଚଳିଲେ ସବୁ ଠିକ୍ ହୋଇଯିବ । ଗୋଟିଏ ଢେଲରେ ଦୁଇଟି ପକ୍ଷୀ ଶିକାର କରିବାକୁ ହେବ ।

ଆଲେୟୁା—କୁହନ୍ତୁ ମୁଁ ପ୍ରସ୍ତୁତ ଅଛି ।

ଜହରତ—କେବଳ ତନସୁ୍ୟାକୁ ନୁହେଁ । କୌଶଳରେ ଶାହାଜାଦାଙ୍କୁ ମଧ୍ୟ ହତ୍ୟା କରି ପାରିଲେ······

( ଆଲେୟୁା ଚମକୁଛି, ଆସିଛି ଇମାମ)

ଆଲେୟୁା –ସେନାପତି ।

ଇମାମ—ସଲାମ ସେନାପତି ସାହେବ । ଶାହାଜାଦା ଆପଣଙ୍କୁ ୟାଦ କରିଛନ୍ତି ।

ଜହରତ –ଆଚ୍ଛା, ମୁଁ ଆସୁଛି ଆଲେୟୁା । (ପ୍ରସ୍ଥାନ)

ଇମାମ—ଆଲେୟୁା ବିବି, ତୁମର ତକଦିର ବଡ଼ା ତେଜ । ତନସୁ୍ୟାକୁ ରାଜ କରାଇବା ପାଇଁ ତୁମକୁ ଆଜ କଷ୍ଟ କରିବାକୁ ପଡ଼ିବ ନାହିଁ । ଜଣେ ଏପରି ଗୁଣିଆର ସନ୍ଧାନ ମୁଁ ପାଇଛି ଯେ କ ଥରେ ତନସୁ୍ୟାକୁ ଛୁଇଁଦେଲେ ସେ ତାର ନିଜକୁ ଏକାବେଳେ ଭୁଲିଯାଇ ଯୋଧା ଶଢ଼ଆପଣ ପିଞ୍ଜରାରେ ପଶି, ବୋଲି ସୁର କରିଦେବ ।

ଆଲେଖ୍ୟା—ସତେ ! ଏ ଭଳି ଜଣେ ଗୁଣିଆର ସନ୍ଧାନ ତୁମେ କେଉଁଠୁ ପାଇଲ ଇମାମ୍ । ଯଦି ତା ହୁଏନା ମୋର ଇନାମର ବଡ଼ ଭାଗୀଦାର ହେବ ତୁମେ । ମୋ ପାଇଁ ତୁମର ଏତେ ଚେଷ୍ଟା ମୁଁ ଭୁଲିପାରିବ ନାହିଁ ।

ଇମାମ—ଆଲେଖ୍ୟା ବିବି ! ସମସ୍ତଙ୍କୁ ଛାଡ଼ି ତମରି ପାଇଁ କେବଳ ଜୀବନ ଧରି ରହିଛି । ତୁମେ ସତରେ ମୋର ଆଖିର ରୋଶନ, ତୁମକୁ ଯେ ମୁଁ କେତେ ପ୍ୟାର କରେ··· ।

ଆଲେଖ୍ୟା—ତୁମେ ବି ମୋତେ ପ୍ୟାରକର ଇମାମ୍ ! ହେଲେ ପ୍ୟାର କରିବା ପାଇଁ ବୟସ ତୁମର ଅଛି ତ ?

ଇମାମ—ବୟସ କ'ଣ ପଳାଇଗଲା । ହେଇ ହେଇ ଷାଠିଏଷଠି ହେବ । ବାଳ ସିନା ପାଚିଗଲାଣି । ଲେକିନ ବଳ ଆଦୌ କମିନି । ମନ ବି ମରିନି । ତୁମକୁ ପାଇଲେ ଆଲେଖ୍ୟା ବିବି ! ବାଳଗୁଡ଼ିକ ପୁଣି କଳା କରିବାର ବ୍ୟବସ୍ଥା କରିଦେବି ।

ଆଲେଖ୍ୟା—ମୋତେ ତୁମେ ପାଇବ ନିଶ୍ଚୟ । ହେଲେ ମୋ ପାଇଁ ଆଗେ ସାଧନା କରିବାକୁ ହେବ । ସାଧନାରେ ଆଗ ଉତ୍ତୀର୍ଣ୍ଣ ହୁଅ । ତେବେ ଯାଇ ମୋତେ ପାଇବ ।

ଇମାମ୍—ଠିକ୍ ଅଛି ଆଲେଖ୍ୟା ବିବି । ବିଲ୍‌କୁଲ ଠିକ୍ ଅଛି । କୁହ ମୋତେ କି ଅସାଧ୍ୟ ସାଧନ କରିବାକୁ ହେବ ?

ଆଲେଖ୍ୟା—ଅତି ଗୁପ୍ତକଥା । ସେ କଥା ଏଠାରେ ପ୍ରକାଶ କରିବାର ନୁହେଁ । ତୁମେ ଆଗେ ସେ ଗୁଣିଆକୁ ଆଣି ମୋ ପାଖେ ପହଞ୍ଚାଇ ଦିଅ । ମୁଁ ସେ ପାଇକ ଝିଅଟାକୁ ରାଜି କରାଇ ଦେଇ

ଶାହାଜାଦାଙ୍କ ନିକଟରେ ଗୁପ୍ତଦେଲେ ତାଙ୍କ ପାଖରୁ ମୋତେ ଛୁଟି ମିଳିବ । ତା'ପରେ ଆମ ମିଳନରେ ଆଉ କିଛି ବାଧା ରହିବ ନାହିଁ । କ'ଣ ପାରିବ ନାହିଁ ଇମାମ୍ ?

ଇମାମ—ଅଲବତ୍ ପାରିବ । ମୁଁ ଏଇ ସାଙ୍ଗେ ସାଙ୍ଗେ ଚାଲିଲି, ଆଲେସ୍ମା ମେରି ଜାନ୍ ।

(ଇମାମ ଚାଲିଗଲା—ଆଲେସ୍ମା ହସୁଥାଏ)

( ମଞ୍ଚ ଅନ୍ଧକାର )

## ଷଷ୍ଠ ଦୃଶ୍ୟ

[ ଚନ୍ଦ୍ରାର ଶୟନକକ୍ଷ ]

ସିରାଜ—କୁଦ୍ଧ ଚନ୍ଦ୍ରା ! ମୁଁ ଆଜ ତୁମର ଶେଷ ନିଷ୍ପତ୍ତି ଶୁଣିବାକୁ ଚାହେଁ ।

ଚନ୍ଦ୍ରା—କହୁଛି ତ ଭଦ୍ରକ ଫେରିଯିବା ଛଡ଼ା ଦ୍ୱିତୀୟ ନିଷ୍ପତ୍ତି କିଛି ନାହିଁ ।

ସିରାଜ—ମୁଁ ବି ବାରବାର କହି ଆସିଛି ଚନ୍ଦ୍ରା, ତୁମକୁ ପାଇବା ଛଡ଼ା ମୋର ଦ୍ୱିତୀୟ ଚାହିଦା କିଛି ନାହିଁ ।

ଚନ୍ଦ୍ରା- ସିରାଜ, ମୁଁ ଜାଣେ ଅସଂଖ୍ୟ ନାରୀର ଦେହ ଭୋଗ କରିଛନ୍ତି ଆପଣ । ତଥାପି ଆପଣଙ୍କର ଏ ନାରୀଜାତିଟାକୁ ଚିହ୍ନିବାର ବାକି ରହିଯାଇଛି । ଯେ କେତୋଟି ମୁହୂର୍ତ୍ତ ଚନ୍ଦ୍ରା ଘରେ କଟେଇ ଆସିଛନ୍ତି ସେଥିରେ ତାର ବାହାରର ରୂପଟାକୁ ଦେଖିଛନ୍ତି ମାତ୍ର । ହେଲେ ତା ଭିତରର ଭୟଙ୍କର ମୂର୍ତ୍ତିଟାକୁ ଦେଖିବାର ସୁଯୋଗ ଆପଣ ପାଇ ନାହାନ୍ତି । ଶୁଣନ୍ତୁ ସିରାଜଉଦ୍ଦୌଲ୍ । ଅତି ବିନମ୍ରତାର ସହିତ ଆପଣଙ୍କୁ ଅନୁରୋଧ କରୁଛି, ଏ ଜୀବନରେ ଚନ୍ଦ୍ରାକୁ ପାଇବାର ଆଶା ମନରୁ ପୋଛି ଦିଅନ୍ତୁ ।

ସିରାଜ—କିନ୍ତୁ କାହିଁକି ? କ'ଣ ପାଇଁ ? ସେଥିପାଇଁ କ'ଣ ମୁଁ ଅଯୋଗ୍ୟ ? କହ ପାଗଳ ଚନ୍ଦ୍ରା ସିରାଜଉଦ୍ଦୌଲ୍ ତୁମ ପାଖରେ କି ଅପରାଧ କରିଛି ? ତୁମକୁ ଭଲ ପାଇଛି । ତୁମକୁ ସମ୍ମାନ କରିଛି । ଏ ଘର ନାରୀର ଉପଯୁକ୍ତ ମର୍ଯ୍ୟାଦା

ଦେଇ ତୁମକୁ ତାର ବେଗମ ମହଲରେ ଆଶ୍ରୟ ଦେଇଛି । ଆଜ ପରିଶେଷରେ ବଙ୍ଗ-ବିହାର-ଓଡ଼ିଶାର ଭାବୀ ସାମ୍ରାଜ୍ଞୀ କରିବାର ପ୍ରତିଶ୍ରୁତି ଦେଇଛି । ଏଇ ତାର ଅପରାଧ ନା ? ତେଣୁ ତୁମେ ତାକୁ ଭଲପାଇବା ପରିବର୍ତ୍ତେ ଘୃଣା କରିଛ । କୃତଜ୍ଞତା ପରିବର୍ତ୍ତେ ଆଘାତ ପରେ ଆଘାତ ଦେଇଛ । ଦାମ୍ଭିକା ନାରୀ !—

( ତନୟାକୁ ଧକ୍କା ମାରିଲେ—
ତନୟା ପଡ଼ିଯାଇଛି )

ତନୟା—ଆଃ-ସିରାଜ ? ତୁମେ ଏତେ ହୀନ, ଏତେ ନୀଚ । ଏଇ ସମ୍ମାନ ତୁମେ ନାରୀକୁ ଦେଇ ଶିଖିଛ ?

ସିରାଜ—ସମ୍ମାନ ଯେ ଦେଇ ଶିଖିନ ସମ୍ମାନ ସେ ପାଏନା ତନୟା, ଅନୁନୟ କଲି—ଅବମାନନା କଲ । ପ୍ରେମ ନିବେଦନ କଲି—ପ୍ରତ୍ୟାଖ୍ୟାନ କଲ । ପ୍ରଣୟକୁ ପରିଣୟର ଶକ୍ତ ବନ୍ଧନରେ ବାନ୍ଧି ରଖିବାକୁ ପ୍ରସ୍ତାବ ଦେଲି—ଗୋଡ଼ରେ ଆଡ଼େଇ ଦେଲ; ତେବେ ବର୍ତ୍ତମାନ ଜୋର କରି ମୋର ପ୍ରାପ୍ୟ ଆଦାୟ କରିବା ଛଡ଼ା ଆଉ କ'ଣ ଅଛି କୁହ ?

ତନୟା—(ଚିତ୍କାର କରି) ନା !

ସିରାଜ—ଶାହାଜାଦା ସିରାଜଉଦ୍ଦୌଲ୍ଲାର ରଙ୍ଗମହଲରେ ଯେ ଥରେ ପ୍ରବେଶ କରେ ସେ ଏତେ ସହଜରେ ଏଠାରୁ ବାହାରି ଯାଇ ପାରେନା ।

ତନୟା—ସିରାଜ !!! । ( ଆଲେୟାର ପ୍ରବେଶ )

ଆଲେୟା—ଶାହାଜାଦା ମୋର ଗୁସ୍ତାକ ମାଫ କରିବେ । ଅସମୟରେ ଆସିବାକୁ ବାଧ୍ୟ ହେଲି । ଶାହାଜାଦା ଟିକିଏ

ଉତ୍ତେଜିତ ଥିଲାପରି ମନେ ହେଉଛି । ହେଲେ ଆଲେଖ୍ୟା ହାତରେ···ଥାଉ, ଥାଉ—   (ଇସାରା ଦେଲା)

ସିରାଜ—ଦେଖ ତନୟା, ମୁଁ ତୁମକୁ ଆହୁରି ସମୟ ଦେଉଛି, ଭଲ ଭାବେ ଚିନ୍ତାକରି ମୋ କଥାର ଉତ୍ତର ଦେବ ।   (ପ୍ରସ୍ଥାନ)

ଆଲେଖ୍ୟା—ଦେଖ ଭଉଣି ! ତୁମେ ନାରୀ ମୁଁ ମଧ୍ୟ ନାରୀ । ନାରୀ ମନର ବେଦନା ମୁଁ ବେଶ ବୁଝିପାରେ । ତୁମର ଅସ୍ଥିର ମନ, ପରିସ୍ଥିତିରେ ପଡ଼ି ବିଷାକ୍ତ ହୋଇଉଠିଛି । ଆଜି ତାକୁ ଶାନ୍ତ କରିବାର ଉପାୟ ମୁଁ ବାହାର କରି ପାରିଛି । ଏପରି ଜଣେ ଲୋକ ହଠାତ୍ ମିଳିଗଲେ—ଯେ କି ଖାଲି ତୁମକୁ ଦେଖି ଦେଖି କହିଦେବେ, ତୁମେ କ'ଣ କଲେ ଏ ମାନସିକ ଯନ୍ତ୍ରଣାରୁ ମୁକ୍ତି ପାଇବ । ବର୍ତ୍ତମାନ ତୁମର କର୍ତ୍ତବ୍ୟ କ'ଣ ସେ ବୁଝିଦେଲେ ସ୍ଥିର କରିଦେବ । ତୁମରି ଭଲପାଇଁ ମୁଁ ଶାହାଜାଦାଙ୍କୁ ନ ଜଣାଇ ତାଙ୍କୁ ନେଇ ଆସିଛି ।

ତନୟା—ମୋର ଭଲ ପାଇଁ, ମୋର ଭଲ ପାଇଁ ତୁମର ପୁଣି ଏ ନୂଆ ଉଦ୍ୟମ ନା ?

ଆଲେଖ୍ୟା – ମୋତେ ତୁମେ ବିଶ୍ୱାସ କରୁ ନାହଁ ? ବେଶ୍ କାର୍ଯ୍ୟରେ ଦେଖିଲେ ଜାଣିପାରିବ···ପଣ୍ଡିତ ଜୀ ଆସନ୍ତୁ, ଭିତରକୁ ଆସନ୍ତୁ ।

ଶୁଭ—(ଜ୍ୟୋତିଷବେଶରେ ପ୍ରବେଶି) ବମ୍ ଶିବ ଶମ୍ଭୋ (ତାଙ୍କୁ ଦେଖି) ଇସ୍ ଏଇ ସାମାନ୍ୟ କାରଣରୁ ମତେ ତୁମେ ଡାକି ଆଣିଛ ? ଏ ଝିଅ ଉପରେ ଗୋଟାଏ ସଇତାନ ସ୍ୱାର ରୂପ ଦେଖି ସବାର ହେଇଛି । ତା ଦେହ ମନ କିଛି ତା ନିଜ ଆୟତ୍ତରେ ନାହିଁ । ଭୂତନାଥଙ୍କର ଦୟାହେଲେ ଦୁଇପଦ

ବାକ୍ୟ ଓ ଗୋଟେ ଘୂର୍ଣ୍ଣିରେ ସେ ପୁଣି ନୂଆ ଲୋକ ହୋଇ ତୁମ ସଙ୍ଗେ ଖେଳବୁଲ୍ କରିବ । ବ୍ୟସ୍ତ ହେବାର କିଛି ନାହିଁ ।

ଆଲେଖ୍ୟ—ସତ କହୁଛନ୍ତି ପଣ୍ଡିତ ଜୀ ! ଆପଣ ଆପଣଙ୍କ କାମକରି ଚାଲନ୍ତୁ । ଆପଣଙ୍କ ପାଇଁ ଶାହାଜାଦା ଖୁବ୍ ବଡ଼ ଇନାମ୍‌ର ବ୍ୟବସ୍ଥା କରିଦେବେ ।

ଶୁଭ—ଇନାମ୍ ମୋର କ'ଣ ହେବ । ମୋର କେବଳ ଆବଶ୍ୟକ ସୁନାମ, ଭୂତନାଥ ମୋତେ ସେଇତକ ଦେଲେ ଢେର । କାହିଁ ? ମୁଁ କହିଥିବା ମୁତାବକ ଜିନିଷ କାହିଁ ?

ଆଲେଖ୍ୟ—ହେଇଟି, ଆପଣ କହିଥିବା ମୁତାବକ ଜିନିଷ ନେଇ ଆସିଛୁ ।

( ପୁଡ଼ିଆ ଖୋଲି ଦୁବ, ଗୋବର, ସିନ୍ଦୂର, ଗୁଆ ପ୍ରଭୃତି ଦେଲା ।)

ତନସ୍ମା—ଏ ସବୁ କ'ଣ ହେଉଛି ? ମୋତେ କ'ଣ ପାଗଳୀ ବୋଲି ଭାବିଲ ? ଯାଅ ତୁମେ ସବୁ । ବାହାରି ଯାଅ ଏଠୁ !!

ଶୁଭ—ଦେଖୁଚ, ମୋତେ ଦେଖୁ ଦେଖୁ ପ୍ରେତାତ୍ମା କେମିତି ଆରମ୍ଭ କଲାଣି । ରହ ମୁଁ ତୋତେ କ'ଣ ସହଜେ ଛାଡ଼ୁଛି ? ଆଜ ମୋ ହାବୁଡ଼େ ପଡ଼ିଛୁ । ତୋ ଭଳି କେତେ ସଇତାନଙ୍କୁ ମୁଁ ଭୂତନାଥଙ୍କ ଦୟାରୁ ସାବାଡ଼ ବନେଇ ଦେଇଛି । ହଁ, ବଡ ସାହେବା, ତୁମେ କବାଟଟା କିଳିଦେଇ ବାହାରକୁ ଯାଅ, ମୁଁ ନ କହିବା ପର୍ଯ୍ୟନ୍ତ କାହାରିକୁ ଭିତରକୁ ଛାଡ଼ିବନି । ଏ ବଡ଼ ଜବରଦସ୍ତ ସଇତାନ ଅଛି । ଏ ଆଉ ଛାଡ଼ିବା ପରେ ଯଦି ଆଉ କାହା ଉପରେ ନଜର ତାର ପଡ଼ ଯାଏନା ଅବସ୍ଥା ଅସମ୍ଭାଳ ହୋଇ ପଡ଼ିବ ।

ଆଲେସ୍ୟା—ନା ପଣ୍ଡିତ ଜୀ, କେହି ଆସିବେନ । ମୁଁ ପହରା ରଖେଇ ଦେଇଯାଉଛୁ । କେହି ଆସିବେନ । (ପ୍ରସ୍ଥାନ)

ଶୁଭ—(କ'ଣ ଖୋଲି) ହଁ ଏଥର କହ ଯିବୁ ନା ନାହିଁ ? ମୋ ଆଡ଼କୁ ଚାହଁ ! ଚାହଁ—

ଚନସ୍ୟା—(ଚାହିଁଲା ଏବଂ ଚମକିତ) କିଏ ଶୁଭ ଭାଇ ! ତୁମେ ଏଠିକି କେମିତି ଆସିଲ ?

ଶୁଭ—ଆଃ ସେ-ବହୁକଷ୍ଟରେ ଭଉଣୀ, ସାତ ସମୁଦ୍ର ତେର ନଦୀ ପାରହୋଇ ହନୁମାନ ସୀତାଠାକ କଲାପରି ମୁଁ ଆସି ତୋତେ ଏ ଲଙ୍କାପୁରୀରେ ଯେ କି କଷ୍ଟରେ ପାଇଛି ଭଗବାନ ଜାଣନ୍ତି । ତେଣେ ତୋ ବାପାଙ୍କ ଅବସ୍ଥା ଅତି ଖରାପ । ନ ଖାଇ ନ ପିଇ କଣ୍ଟା ହେଇଗଲେଣି । ସୁଭଦ୍ରା ଆଈ ତ ଦିନ ରାତି କାନ୍ଦୁଛି । ଲଲାଟ ଚାରିଆଡ଼େ ଖୋଜି ହତାଶ ହୋଇ ଦକ୍ଷିଣ ଦିଗକୁ ଯାଇଛି । ତୁ ଆଉ ଡେରି କରନା ଚାଲ ଆମେ ଏଠୁ ଶୀଘ୍ର ପଳେଇ ଯିବା ।

ଚନସ୍ୟା—ନା ଶୁଭ ଭାଇ । ରାତି ଅଧରେ ଚୋରର ଭଳି ଲୁଚି ଲୁଚି ମୁଁ ଏଠୁ ପଳେଇ ଯିବି, ଏମାନଙ୍କୁ ଉପଯୁକ୍ତ ଶିକ୍ଷା ନ ଦେଇ ?

ଶୁଭ—ତୁ କ'ଣ କହୁଚୁ ଭଉଣୀ ? ଏ ଦୁର୍ଦ୍ଧର୍ଷ ମୋଗଲ ବାହିନୀକୁ ତୁ କି ଶିକ୍ଷା ଦେଇ ପାରିବୁ ?

ଚନସ୍ୟା—କାହିଁକି ? ମୁଁ କ'ଣ ପାଇକଝିଅ ନୁହେଁ ଶୁଭଭାଇ ? ମୋ ବାପା ସର୍ଦ୍ଦାର ଶତ୍ରୁଶଲ୍ୟଙ୍କ ଖଣ୍ଡାରୁ କ'ଣ ଧାର କମି ଗଲାଣି । ରାଇବଣିଆର ରାଜା ପାଇକବୀର ଲଲାଟେନ୍ଦୁ, ଯାହାର

ବାହୁବଳ ଦୁର୍ଦ୍ଧାନ୍ତ ମରହଟ୍ଟା ଦସ୍ୟୁ ଗ୍ରାସରୁ ପଣ୍ଡିତଙ୍କୁ ଓଡ଼ିଶାର ସୀମା ଛାଡ଼ି ଚାଲିଯିବାକୁ ବାଧ କରୁଥିଲା, ସେ ବାହୁ କ'ଣ ଦୁର୍ବଳ ହୋଇଗଲଣି ?

ଶୁଭ—ଏ ସବୁ ତୁ କ'ଣ କହୁଚୁ ତାନ ? ତୁ କ'ଣ ଚାହୁଁ ଓଡ଼ିଆ ପାଇକ ଆଜି ମୋଗଲବାହିନୀ ଭିତରେ ଏଇ କାରଣରୁ ଯୁଦ୍ଧ ଲଗୁ ।

ତନୟା—ମୁଁ ଚାହେଁ ? ତୁମେ କ'ଣ ଚାହୁଁନା ? ଆଜି ମୁଁ ନ ହୋଇ ତୁମର ଭଉଣୀକୁ ଯଦି ହରଣଚାଲ କରି ଶାହାଜାଦା ନେଇ ଆସିଥାନ୍ତେ ତେବେ ତୁମେ କ'ଣ ଆଖି ବୁଜି ଏଇ ନିଆଁ ଭିତରକୁ ଡେଇଁ ପଡ଼ି ନ ଥାନ୍ତ ? ତାନ ଖାଲି ସର୍ଦ୍ଦାର ଶମ୍ଭୁଶଲ୍ୟଙ୍କ ଝିଅ ନୁହେଁ ? ଶୁଭଭାଇ ! ସମସ୍ତ ପାଇକ କୁଳର ଝିଅ ସେ । ତାର ଆତ୍ମ-ସମ୍ମାନ କ'ଣ ପାଇକକୁଳର ଆତ୍ମସମ୍ମାନ ନୁହେଁ ? ତୁମେ ଯାଅ ଶୁଭ ଭାଇ; ସମସ୍ତଙ୍କୁ କହିବ ଅସୁରପୁରୀରେ ଅଶୋକ ବନରେ ସୀତାଙ୍କ ଭଳି ସେମାନଙ୍କ ଜୟଯାତ୍ରାର ପଥକୁ ମୁଁ ଚାହିଁ ବସିଛି ।

ଶୁଭ—କିନ୍ତୁ ତୁ ଏତେଦିନ ଏ ବନ୍ଦଶାଳା ଭିତରେ ବଞ୍ଚିରହି ପାରିବୁ ?

ତନୟା—ତୁମେ ଯାଅ ଶୁଭ ଭାଇ । ଲଲ୍ ଭାଇଙ୍କୁ କହିବ ତନୟାର ମନର ବଳ ତାଙ୍କୁ ଅଜଣା ନାହିଁ । ସେ ଯଦି ବଞ୍ଚିଥାଏ ସେହି ତନୟା ହୋଇ ବଞ୍ଚିଥିବ । ଯଦି ମରିଯାଏ ସେହି ତନୟା ହୋଇ ମରିବ । ଏମାନେ ତାର କିଛି କରି ପାରିବେ ନାହିଁ । ମୁଁ ତାଙ୍କ ପଥ ଚାହିଁ ରହିଛି ।

ଶୁଭ—ବେଶ୍, ମୁଁ ଏଇ ସଙ୍ଗେ ସଙ୍ଗେ ଚାଲିଲି । ତୁ କିଛି ଚିନ୍ତା କରିବୁ ନାହିଁ ଭଉଣୀ । ତୁ ଖାଲି ଜଗନ୍ନାଥଙ୍କୁ ଡାକ, ଓଡ଼ିଆ ପାଇକ ଯେପରି ତାର ମାତୃଜାତିର ଟେକ ଅକ୍ଷୁଣ୍ଣ ରଖିପାରେ ।

ହଁ—ତୁ ବର୍ତ୍ତମାନ ଛଳନା କରି ଶୋଇପଡ଼ । ମୁଁ ସେମାନଙ୍କ ଆଖିରେ ଧୂଳି ଦେଇ ଯେମିତି ଆସିଛି ସେମିତି ଚାଲିଯିବି ।

( ବେଶ ବଦଳାଇ ସଙ୍କେତ ଦେଲା—ଦୁଆର ଖୋଲିଲା— ତନୟା ଶୋଇଛି )

ଆଲେୟା—କ'ଣ ହେଲା ପଣ୍ଡିତ ଜୀ ?

ଶୁଭ—କାମ ଫତେ । ଶଇତାନ ଘୁଞ୍ଚି ଚାଲି ଯାଇଛି । ସେ ବର୍ତ୍ତମାନ ବେହୋସ ହୋଇ ପଡ଼ି ରହିଛି । କିନ୍ତୁ ତାର ନିଦ ନ ଭାଙ୍ଗିବାଯାଏ କେହି ଯେପରି ତାକୁ ନ ଉଠାନ୍ତି, ହୁସିଆର ବଡ଼ ଜବରଦସ୍ତ ସଇତାନ ଅଛି । ଏବେ ବି ଏଠି ଆଖ ପାଖରେ ସେ ଘୂରି ବୁଲୁଛି । ଟିକିଏ ବେକସୁମ ହେଲେ ସେ ଖପ୍ କିନା ମାଡ଼ି ବସିବ । ସୁନ୍ଦରୀ ସ୍ତ୍ରୀମାନଙ୍କ ଉପରେ ତାର ବଡ଼ ନଜର । ତୁମେ ବି ହୁସିଆର ଥିବ ବିବି ସାହେବା । ତୁମ ଉପରେ ବି ତାର ନଜର ପଡ଼ିଯାଇ ପାରେ । ମୋ ପାଖକୁ ଆସ, ମୁଁ ମନ୍ତ୍ରଜଳ ସିଞ୍ଚିଦିଏ । (ଆଲେୟାକୁ ମନ୍ତ୍ରଜଳ ସିଞ୍ଚିଲା) ଆଚ୍ଛା, ମୁଁ ଏଥର ଆସେ । ବ୍ୟସ୍ତ ହେବନି, ଝିଅ ଏକଦମ୍ ବାଟକୁ ଆସିଯାଇଛି । ଦୁଇ ଚାରିଦିନ ଭିତରେ ସେ ନିଜେ ଶାହାଜାଦାଙ୍କୁ ନ ଦେଖିଲେ ପାଗଳ ହୋଇଯିବ । ଖାଲି ଟିକେ ଧୈର୍ଯ୍ୟଧରି ଅପେକ୍ଷା କରିବେ । ମୁଁ ଚାଲିଲି । (ପ୍ରସ୍ଥାନ)

(ଅନ୍ଧାର)

## ସପ୍ତମ ଦୃଶ୍ୟ

[ ଅମରର ଅଗଣା—ମୁକ୍ତକେଶୀ କାନ୍ଦୁଥାଏ—ଅମର ବୁଝାଉ-ଥାଏ ]

ଅମର—ମୁକ୍ତକେଶୀ ! ମୋ ରାଣ, ମୋ ମୁଣ୍ଡ ଖାଇବ, ତୁମେ ଆଉ କାନ୍ଦନା । ତୁମ ଲୁହ ମୁଁ ମୋଟେ ଦେଖି ପାରୁନି—

( ଆଖି ପୋଛିବାକୁ ଗଲା )

ମୁକ୍ତ—(ହାତ ଛୁଞ୍ଚାଡ଼ି) ଯାଅ । ମୋ ଦେହରେ ଲଗାଅ ନା କହୁଛି । ସେମିତି ହେଲେ ମୁଁ ମୁଣ୍ଡ ପିଟି ମରିବି । ମୋ ବାପାଙ୍କୁ ବର ମିଳୁ ନ ଥିଲା ଯେ ଏମିତି ଗୋଟିଏ ମାଇଚିଆ ଅଣ୍ଡିରାକୁ ମୋ ବେକରେ ଛନ୍ଦିଦେଲେ, ଜୀବନରେ ଆଉ ସୁଖ ପାଇଲି ନାହିଁ ।

ଅମର—ଆହେ ତୁମେ ତୁନ ହୁଅ ଭଲା । ମୁଁ କ'ଣ ଚେଷ୍ଟା କରୁନାହିଁ ? ତୁମକୁ ସୁଖୀ କରିବାକୁ । ହେଲେ କ'ଣ ହେବ କପାଳ ତ ଫଟା । ତୁମର ଦୋଷରୁ ତ ପାଣି ଦେବାକୁ ବଳେଇ ଛୁଆଟିଏ ବି ହେଲେନି ? ମୁଁ କ'ଣ କରିବି କୁହ ?

ମୁକ୍ତ—ଫେର ସେଇକଥା କହିଲ । ନା, ତୁମେ ଏମିତି ଭଲରେ ମାନିବନି । ମୁଁ ଏଇନେ ଖୁଲିଲି ସର୍ଦ୍ଦାରଙ୍କୁ ଜଣେଇବି । ତୁମେ କେମିତି ଯୁଦ୍ଧ ବେଳେ ଘରେ ଲୁଚି ରହିବ ମୁଁ ଦେଖିବି ।

ଅମର—ମୁକ୍ତକେଶୀ, ମୋ ସୁନାଟା ପରା, ସେତକ କରନାହିଁ । ତନୟାକୁ ମୋଗଲମାନେ ନେଇଯାଇ ବନ୍ଦୀକରି ରଖିଛନ୍ତି ବୋଲି ଶୁଣିଲାବେଳୁ ସର୍ଦ୍ଦାର ଖାଲି ଘାଉଁଲା ସିଂହ ଭଳି

ହଜଚନ୍ତି । ତାଙ୍କର ସେ ଯୋଉ ସ୍ୱର, ଯେଉଁ ଗର୍ଜନ, ତାଙ୍କୁ ଦେଖି ତ ମୋ ଛାତି ପଡ଼ଲା ଉଠିଲା । ତୁମେ ପୁଣି ସେଇଠିକି ଯିବ । ମୋ ନାମରେ ଗୁହାରି କରିବାକୁ ।

ମୁକ୍ତ—ଗୁହାରି କରିବାକୁ ନୁହେଁ । ଶୁଭ ଭାଇଙ୍କଠାରୁ ତାଙ୍କର ଅବସ୍ଥା ଶୁଣି ପାଇକଭେଣ୍ଡିଆ ସଜବାଜ ହୋଇ ଫରି ଖଣ୍ଡା ଧରି ଡେଇଁ ପଡ଼ିଲେଣି । ମୋଗଲମାନଙ୍କୁ ଠିକ୍ ଜବାବ ଦେଇ ତାଙ୍କୁ ଫେରେଇ ନ ଆଣିବା ଯାଏ ସେମାନେ ଘରେ ମୁହଁ ଦେଖାଇବେ ନାହିଁ ବୋଲି ପଣକରି ବାହାରିଛନ୍ତି । ଆଉ ତୁମେ ମୋରି ପଣତକାନି ଯୋଡ଼େଇ ହେଇ ଘରେ ଲୁଚି ବସିବ ? ଏ ପୋଡ଼ାମୁହଁ ମୁଁ କୋଉଠି ଦେଖେଇବି । ସାଇ-ଭାଇ ଲୋକେ ପଚାରିଲେ ମୁଁ କ'ଣ ବୋଲି ଜବାବ୍ ଦେବି ?

ଅମର—ମୁକ୍ତ, ସେ କାଲଠା ଭଗବାନଙ୍କୁ ଦେଖିଲେ ମୁଁ ପଚାରନ୍ତି ତୁମକୁ ସେ କାଠୁଆ ପୁରୁଷ ଜନ୍ମ ନ ଦେଇ, କଅଁଳିଆ ସ୍ତ୍ରୀ ଜନ୍ମ କାହିଁକି ଦେଲେ । ହଇହେ ଭୁଲ କରିବେ ସେ, ଫଳ ଭୋଗିବି ମୁଁ ? ଆରେ······

ମୁକ୍ତ –କ'ଣ କହିଲ ? ମୁଁ ପୁରୁଷ ? ମାନେ, ମୁଁ ଅଣ୍ଡିରାଚଣ୍ଡୀ । ହଉ ହେଲା ମୁଁ ଯେବେ ପୁରୁଷ, ତୁମେ ଶାଢ଼ୀ ଗହଣା ପିନ୍ଧି ଘରେ ବସ । ମୁଁ ବାହାରକୁ ଯାଉଚି । ରୁହ ଆଣି ଦଉଚି

(ଭିତରକୁ ଗଲା )

ଅମର—ମୁକ୍ତ ! ମୁକ୍ତ ! ଆହେ ଶୁଣ, ତୁମକୁ କ'ଣ ପ୍ରେ ଶାଢ଼ୀ ଗହଣାଗାଣ୍ଠି ସବୁ ଗରୁଆ ଲାଗିଲାଣି ? ଏସବୁ ତ ଭଲ ଲକ୍ଷଣ ନୁହେଁ । ହଇହେ ମୁଁ ଗୋଟାପଣେ ସ୍ୱାମୀଟା ତୁମ ଆଗରେ

ଥାଉଁ ଥାଉଁ ତୁମେ ସ୍ତ୍ରୀ ବୋଝ ଗୁଡ଼ାକ ହାଲୁକା କରିବାକୁ ବସିଚ ?

ମୁକ୍ତ—(ଆସି) ନଅ—ଏଥର ସ୍ତ୍ରୀକୁ ସବୁ ପିନ୍ଧ ଆରାମରେ ଘର କୋଣରେ ଲୁଚି ବସିଥାଅ, ନିର୍ଲଜ୍ଜା ଥୋବଡ଼ା !

( ଶାଢ଼ୀ ଗହଣା ଇତ୍ୟାଦି ଅମର ଉପରକୁ ଫିଙ୍ଗିଦେଇ ଚମଚମ ହୋଇ ବାହାରକୁ ଚାଲିଗଲା )

ଅମର—କ'ଣ ? ଏତେବଡ଼ ଅପମାନ ! ପତି ଦେବତାଙ୍କୁ ତୁ ଏତେ ହୀନଦୃଷ୍ଟିରେ ଦେଖିବୁ ? ଆଚ୍ଛା—ମୁଁ ସ୍ତ୍ରୀର ପ୍ରତିଶୋଧ ଯଦି ନ ନେଇଚି ତେବେ ମୁଁ ତୋ ସ୍ୱାମୀ ନୁହେଁ ।

( ବାହାରୁ ଡାକଚି ଶୁଭ ଦେବ )

ଶୁଭ—ଅମର, ଅମର, ଘରେ ଅଛୁ କରେ ?

ଅମର—(ଚମକି ପଡ଼ି ଶାଢ଼ୀ ଘୋଡ଼େଇ ବସିଲା) ସାରିଦେଲା ରେ ଏଣେ ଶୁଭଭାଇ ଆସିଗଲେଣି । ଆଉ ରକ୍ଷା ନାହିଁ ! ହାଣକୁ ଡାକରା ପଡ଼ିଗଲା ରେ ବାବା ।

ଶୁଭ—(ପ୍ରବେଶି) ଆରେ ବୋହୂ, ଅମର ଘରେ ନାହିଁ କି ?

ଅମର—(ମୁଣ୍ଡିଆ ମାରି, ମୁଣ୍ଡ ହଲାଇ ନିର୍ଦ୍ଦେଶ ଦେଲା )

ଶୁଭ—ଆଚ୍ଛା, ଆଚ୍ଛା, ସେ ଆସିଲେ ତାକୁ କହିଦେବ, ସବୁ ପାଇକ ଆଜି ସନ୍ଧ୍ୟାରେ ନାଳିବର ପଡ଼ିଆରେ ରୁଣ୍ଡ ହେବେ । ସେଇଠୁ ସର୍ଦ୍ଦାରଙ୍କ ଆଦେଶ ନେଇ ସମସ୍ତେ ମୁର୍ଶିଦାବାଦ ଯାତ୍ରା କରିବେ । ଲକ୍ଷ୍ମୀଚନ୍ଦ୍ର ମଧ୍ୟ ପାଇକମାନଙ୍କୁ ନେଇ ସନ୍ଧ୍ୟାରେ

ସେଠି ଆସି ପହଞ୍ଚିବେ । ଅମର ଯେପରି ଡେରି ନକରେ । ମୁଁ ଗୁଳାଳ ଜନ୍ୟମାନଙ୍କୁ ଖବର ଦେବାକୁ ହେବ । (ଫେରି ଦେଖିଲା ବାହାରୁ ମୁକ୍ତା ଆସୁଛି ) କିଏ ବୋହୂ ! ଆଜ ସେ କିଏ ? ଓଃ. ବୋଧହୁଏ ତୁମର କେହି ବନ୍ଧୁ ହେବେ, ଆଚ୍ଛା ମୁଁ ଯାହା କହିଗଲି ଅମରକୁ କହି ଶୀଘ୍ର ପଠେଇ ଦବ ।

(ପ୍ରସ୍ଥାନ)

ମୁକ୍ତା—(ଅମରକୁ ଉଠେଇ) ହଇହେ ଆହୁରି ଶାଢ଼ୀ ଘୋଡ଼େଇ ହୋଇ ବସିଛ ତୁମେ ? ଶୁଭ ଭାଇ କ'ଣ କହିଗଲେ ଶୁଣିଲଟି ।

ଅମର—ହଁ ଶୁଣିଲି ? ମୁଁ କ'ଣ କାଲୁ ହୋଇଚକି ?

ମୁକ୍ତା— କ'ଣ ଯାଉଚ ତ ?

ଅମର—ମୁଁ କ'ଣ ଯାଇ ନଥାନ୍ତି କି ? ଖାଲି ତୁମକୁ ଟିକିଏ ପରୀକ୍ଷା କରୁଥିଲି ନା । ତୁମେ ମୋତେ କେତେ ଭଲପାଅ ସେତିକି ଦେଖୁଥିଲି । ମୋତେ ବାହାରକୁ ପଠେଇଦେଲେ ଯେ ତୁମେ ନିଶ୍ଚିନ୍ତ ହେବ ସେତିକି ବୁଝିଗଲି ।

ମୁକ୍ତା—(ଆଦରରେ) ଆଗୋ ! ତୁମେ ଏକଥା କହି ପାରୁଛ । ମୋର ଆଜ କିଏ ଅଛି ଭଲ । ପିଲା ଥିଲେ ସିନା ତାଙ୍କ ମୁହଁକୁ ଚାହିଁ ଦିନ କଟାଇ ଦିଅନ୍ତି । ତୁମକୁ ଯୁଦ୍ଧକୁ ପଠେଇ ଦେଇ ମୁଁ ଯେ କିଭଳି ଭାବେ ଦିନ ଗଣୁଥାଏ, ତା ତୁମେ ବୁଝିବ କୁଆଡୁ ?

ଅମର—ହୋଇଗଲା ! ହୋଇଗଲା ! ମୁକ୍ତକେଶୀ ! ଆଉ ଦରକାର ନାହିଁ । ତୁମର ଏଇ କଥା ପଦକ ମୋ ଦେହରେ ସିଂହର

ବଳ ଆଣିଦେଲ । ଯାଅ ମୋର ଢାଲ, ଖଣ୍ଡା ସଜକରି ରଖ, ମୁଁ ସନ୍ଧ୍ୟା ସମୟରେ ଯାତ୍ରା ଆରମ୍ଭ କରିବ ।

ମୁକ୍ତ—(ଆଦର କରି) ସେ୍ତ ଯେ ପାଇକପୁଅର କଥା, ଆସ ଖାଇବ ଆସ—ଉଚ୍ଛୁର ହେଇଗଲାଣି ପରା

( ଆଦରରେ ନେଇଗଲା )

( ଅନ୍ଧାର )

## ଅଷ୍ଟମ ଦୃଶ୍ୟ

[ ରାତ୍ରି । ପଲଙ୍କ ଉପରେ ଚନ୍ଦ୍ରା ଶୋଇଛ, ଧୀରେ, ଧୀରେ ଅତି ସନ୍ତର୍ପଣରେ ଆସିଲେ ଆଲେୟା, ଇସାରା କଲେ, ଆସିଲେ ଇମାମ୍ ]

ଆଲେୟା—ଯାଅ, ଆଉ ଡେରି କରନା

( ଇମାମ୍ ଛୁରି ମାରିବାକୁ ଗଲେ)

ଇମାମ୍—ମୋ ଗୋଡ଼ ଥରୁଛି ଆଲେୟା ।

ଆଲେୟା—ଚାଲ । ମୁଁ ତୁମ ସାଙ୍ଗରେ ଯାଉଛି ।

ଇମାମ୍—ଆଲେୟା—ମୋ ହାତ ଥରୁଛି ।

ଆଲେୟା—( ରାଗି ଛୁରି ଛଡ଼ାଇ ନେଇ) ସେ ପୁଣି ମୋତେ କରିବେ ମୋତି ବେଗମ୍ ।

ଇମାମ୍—ରାଗନା ଆଲେୟା । ରାଗ, କ୍ରୋଧ, ହିଂସା କିଛି ଗୋଟେ ଆସିଲେ ସିନା ମୁଁ ମାରି ଦିଅନ୍ତି । ଆଚ୍ଛା, ତୁମେ ତା ଛାତିରେ ଛୁରିଟାକୁ ଭୁଷି ଦିଅ । ମୁଁ କାଢ଼ି ଆଣିବି ।

ଆଲେୟା—ହୁଁ—ଆଚ୍ଛା

( ଛୁରି ମାରିବାକୁ ଯିବାବେଳେ ଆସିଛନ୍ତି ସିରାଜ)

ସିରାଜ—ଆଲେୟା ! (ଆଲେୟା ହାତରୁ ଛୁରି ଖସି ପଡ଼ୁଛି, ଇମାମ୍ ଆଲେୟା ପଛରେ ଲୁଚୁଛି ।) ଆଲେୟା·····ତୁମେ ହତ୍ୟା କରିପାର ?

ଆଲେସ୍ସା—ମତେ ଭୁଲ ବୁଝନ୍ତୁ ନାହିଁ ଶାହାଜାଦା । ଏଇ କେତେ ଦିନ ଭିତରେ ମୁଁ ବେଶ ଲକ୍ଷ୍ୟ କରି ପାରିଛି, ତନସ୍ସାଙ୍କୁ ନ ପାଇଲେ ମୋର ପ୍ରାଣର ଶାହାଜାଦା ପାଗଳ ହୋଇଯିବେ ସେଇଥିପାଇଁ......

ସିରାଜ—ସେଇଥିପାଇଁ ତା'ହେଲେ ତୁମେ ତନସ୍ସାଙ୍କୁ ହତ୍ୟା କରିବାକୁ ଯାଇଥିଲ ?

ଆଲେସ୍ସା ନା ଶାହାଜାଦା । ଏଇଟା ପ୍ରକୃତରେ ହତ୍ୟା ନୁହେଁ । ଖାଲି ହତ୍ୟାର ଧମକ ଦେଇ ଚେଷ୍ଟା କରୁଥିଲି କପରି ତାଙ୍କୁ ଶାହାଜାଦାଙ୍କର ବଶ୍ୟତା ସ୍ୱୀକାର କରାଇବ ।

ସିରାଜ—ବାଃ—ଚମତ୍କାର ! ତୁମଠାରେ ତାହେଲେ ମୋର କୃତଜ୍ଞ ରହିବାର କଥା । ବାସ୍ତବିକ ଆଲେସ୍ସା, ତୁମକୁ ଆଜି ପର୍ଯ୍ୟନ୍ତ ମୁଁ ବହୁରୂପରେ ଜାଣିଥିଲି । ଖାଲି ଜାଣି ନଥିଲି ତୁମେ କେତେ ସୁନ୍ଦର ଅଭିନୟ କରିପାର । ସତରେ ତୁମର ଅଭିନୟ ଦେଖି ମୁଁ ଆଜି ମୁଗ୍ଧ ହୋଇଛି, ତୁମକୁ ପୁରସ୍କୃତ କରିବାକୁ ହେବ । କୋଇ ହେ ! (ସନ୍ତ୍ରୀ ପ୍ରବେଶ)

ସନ୍ତ୍ରୀ—ଶାହାଜାଦା......

ସିରାଜ—ଆଲେସ୍ସା ବିବିଙ୍କୁ ମୁଁ ପୁରସ୍କୃତ କରିବାକୁ ଚାହେଁ । ତାଙ୍କୁ ଶୃଙ୍ଖଳିତ କରି ଅନ୍ଧକାର କାରାଗାରରେ ନିକ୍ଷେପ କର ।

ଆଲେସ୍ସା—ଶାହାଜାଦା ! (ସନ୍ତ୍ରୀ ଶୃଙ୍ଖଳିତ କରିଛି) ଏହା କ'ଣ ଶାହାଜାଦାଙ୍କର ଉପଯୁକ୍ତ ବିଚାର ?

ସିରାଜ—ସନ୍ତ୍ରୀ !

( ସନ୍ତ୍ରୀ ଆଲେସ୍ସାକୁ ନେଇଗଲା, ଇମାମ୍ ମଲ ଭଳି ଢଳି ପଡ଼ିଲା )

ଇମାମ୍ ! ତୁମର ଏଥିରେ କ ସ୍ୱାର୍ଥ ଥିଲା ମୁଁ ବୁଝି ପାରିଲି ନାହିଁ ? କ'ଣ ତନସ୍ସା, ନା ଆଲେସ୍ସା ? କାହାର କରୁଣା ପାଇବାର ଇଚ୍ଛା କୁହ—( ଇମାମ୍ ପଡ଼ିଥାଏ ) ସଲ୍ଓ୍ୱାଚ୍— (ସଲ୍ଓ୍ୱାଚ ପ୍ରବେଶ) ଏହାକୁ ମଧ୍ୟ ନେଇଯାଅ ।

ସଲ୍ଓ୍ୱଚ୍—(ଇମାମ୍‌କୁ ଦେଖି) ଶାହାଜାଦା । ଇମାମ୍ ସାହେବଙ୍କର ବୋଧହୁଏ ମୃତ୍ୟୁ ଘଟିଛି ।

ସିରାଜ—ଏଁ ଇମାମର ମୃତ୍ୟୁ ଘଟିଛି ? ତେବେ କଫିନର ବ୍ୟବସ୍ଥା କରି ତାଙ୍କୁ କବରଖାନାକୁ ନେଇଯାଅ—

ଇମାମ୍—(ହଠାତ୍ ଉଠିପଡ଼ି) ନା-ନା ମୁଁ ମରିନି ଶାହାଜାଦା ! ମୋତେ କବରଖାନାକୁ ପଠାନ୍ତୁ ନାହିଁ । ମୁଁ କିଛି ଅପରାଧ କରିନି । ମୁଁ ହତ୍ୟା କରିବାକୁ ଯାଉ ନଥିଲି । ମୋତେ କ୍ଷମା କରନ୍ତୁ ଶାହାଜାଦା । ମୁଁ ୭୫ ବର୍ଷର ବୃଦ୍ଧ । ତନସ୍ସା ବା ଆଲେସ୍ସା କାହାରିକୁ ସମ୍ଭାଳିବାର କ୍ଷମତା ମୋର ନାହିଁ । ଶାହାଜାଦା ମହାନୁଭବ । ଥରେ ବିଚାର କରନ୍ତୁ ! ଶାହାଜାଦା !

ସିରାଜ—ତାକୁ ନେଇ ଯାଅ । ବନ୍ଦୀ କରି ରଖ । ବିଚାର ପରେ । ତାର ଦଣ୍ଡ ସେ ପାଇବ ।

( ସଲ୍ଓ୍ୱଚ ଇମାମକୁ ନେଇଗଲା- ସିରାଜ ଚାଲି ଯାଉଥିଲେ )

ତନସ୍ସା—ଶୁଣନ୍ତୁ ଶାହାଜାଦା !...

ସିରାଜ—କିଏ ? ତନସ୍ସା, ଓ ତୁମେ ତାହେଲେ ଜାଗ୍ରତ; ମୁଁ ଭାବିଥିଲି ତୁମେ ଶୋଇ ପଡ଼ିଛ ।

ତନୟା—ଶୋଇବାର ବାଟ ତ ଆପଣ ପରିଷ୍କାର କରି ଦେଇଥିଲେ । ବେଶ୍ ନିଶ୍ଚିନ୍ତରେ ସବୁଦିନ ଲାଗି ମୁଁ ମହାନିଦ୍ରାରେ ଶୋଇଥାନ୍ତି । ପୁଣି ଛଳନା କରି ସେଥିରେ ବାଧା ସୃଷ୍ଟି କରିବାର କି ଆବଶ୍ୟକତା ଥିଲା ? କ'ଣ ତିଳ ତିଳ କରି ମୋତେ ମାରିବାକୁ ଆପଣଙ୍କର ଇଚ୍ଛା ?

ସିରାଜ—ତନୟା, କି ପାଷାଣରେ ଗଢ଼ା ତୁମ ହୃଦୟ ! ଏଭଳି ହୀନ ଚିନ୍ତା ତୁମେ କରିପାରିଲ ? ବଙ୍ଗ, ବିହାର, ଓଡ଼ିଶାର ସ୍ୱାମୀ ନବାବ୍ ତୁମଭଳି ଗୋଟିଏ ଝିଅକୁ ହତ୍ୟା କରିବା ଲାଗି ଛଳନାର ଆଶ୍ରୟ ନେବେ କାହିଁକି ? ସେ ଇଚ୍ଛାକଲେ ଗୋଟାଏ ମୁହୂର୍ତ୍ତରେ ତୁମକୁ ଶେଷକରି ଦେଇ ପାରନ୍ତି ।

ତନୟା—ସେଇଆ କରନ୍ତୁ ଶାହାଜାଦା ! ଶୀଘ୍ର ମୋତେ ଶେଷ କରିଦେବାର ବ୍ୟବସ୍ଥା କରନ୍ତୁ । ତାହାହେଲେ ଆପଣଙ୍କର ତୃଷ୍ଣା ମେଣ୍ଟିଯିବ । ଆଉ ମୁଁ ମଧ୍ୟ ଶାନ୍ତି ପାଇବି ।

ସିରାଜ—ଶାହାଜାଦା ସିରାଜ ! ଦସ୍ୟୁ ବା ଘାତକ ନୁହେଁ ତନୟା ! ତୁମେ ତାକୁ ବୁଝି ପାରିନାହଁ । ସେ ସୌନ୍ଦର୍ଯ୍ୟର ଉପାସକ । ରୂପର ପୂଜାରୀ । ମୁଁ ତୁମକୁ ଗୋଟିଏ ସଂବାଦ ଦେବାକୁ ଆସି ହଠାତ୍ ଦେଖେ ତ, ଆଲେୟା ତା'ର ପ୍ରତିଦ୍ୱନ୍ଦୀକୁ ତା' ବାଟରୁ ଘୁଞ୍ଚାଇ ଦେବାଲାଗି ତୁମକୁ ହତ୍ୟା କରିବାକୁ ଯାଉଥିଲା । ଖୋଦାଙ୍କ ମେହେରବାନିରୁ ତୁମେ ରକ୍ଷା ପାଇଗଲ ।

ତନୟା—ଆଜି ସିନା ରକ୍ଷା ପାଇଗଲି; କିନ୍ତୁ ଏଠି ଥିଲାପର୍ଯ୍ୟନ୍ତ ମୋର ନିସ୍ତାର ନାହିଁ । ଆପଣ ଶୀଘ୍ର ମୋତେ ଉଦ୍ରକ ପଠାଇ ଦେବାର ବ୍ୟବସ୍ଥା କରିବେ କି ନାହିଁ ?

ସିରାଜ—ଶୁଣ ତନସ୍ମା ! ମୁଁ ତୁମକୁ ଯେଉଁ ଖବର ଦେବାକୁ ଆସିଥିଲି, ସେ ଖବରଟା ଆଗ ଶୁଣ । ଦୂତ ମୁଖରୁ ସଂବାଦ ପାଇଲି ମୁଁ ତୁମକୁ ଏଠି ଆଣି ରଖିଥିବା କଥା ଭଦ୍ରକ ପାଇକ ବସ୍ତିରେ ପ୍ରଚାର ହୋଇଛି । ଆଜି ସେ ଖବର ପାଇ ପାଇକ-ମାନେ ମାତି ଉଠିଛନ୍ତି । ସେମାନେ ତୁମକୁ ଉଦ୍ଧାର କରିନେବାକୁ ସଜବାଜ ହେଉଛନ୍ତି ବୋଲି ଶୁଣିଲି ।

ତନସ୍ମା—ସତ କହୁଛନ୍ତି ? ମୋ ବାପା ମୋର ଖବର ପାଇଚନ୍ତି । ଯଦି ଏ ଖବର ସତ ହୋଇଥାଏ ତେବେ ଏଥର ବୁଝିବେ ପାଇକମାନଙ୍କର ଶକ୍ତି କେତେ ।

ସିରାଜ—ସେ ଶକ୍ତି ମୋତେ ଜଣାଅଛି ତନସ୍ମା । ପାଇକମାନେ ତ ମୋର ବନ୍ଧୁ । ସେମାନଙ୍କର ସେହି କ୍ଷୁଦ୍ର ଶକ୍ତିକୁ ମୁଁ ମୋର ଏହି ବିରାଟ ମୋଗଲ ବାହିନୀ ଦ୍ୱାରା ପରୀକ୍ଷା କରିବାକୁ ଚାହେଁନା । ବରଂ ସେମାନେ ଏଠାକୁ ଆସି ଯେଉଁଦିନ ତୁମକୁ ମୋ ହାତରେ ଅର୍ପଣ କରି ଆମ ବନ୍ଧୁତ୍ୱକୁ ଅକ୍ଷୁଣ୍ଣ ରଖିବେ ସେଦିନ ଅପେକ୍ଷାରେ ମୁଁ ରହିଲି । ( ଚାଲିଗଲେ )

ତନସ୍ମା—ସିରାଜ ! ଶୁଣିଯାଅ ସିରାଜ ! ମୁଁ ମଧ୍ୟ ସେହିଦିନ ଅପେକ୍ଷାରେ ରହିଛି । ଯେଉଁଦିନ ସିଂହରଗୁହାରୁ ତା'ର ଶାବକକୁ ଅପହରଣ କରିବାର ଶାସ୍ତି ତୁମେ ପାଇବ···

( ଅନ୍ଧାର)

## ନବମ ଦୃଶ୍ୟ

[ ରାଜ ଅଳନ୍ଦ—ଜହରତ୍, ଶମ୍ଭୁଶଙ୍କ,
ଶୁଭଦେବ କଥା ହେଉଛନ୍ତି ]

ଜହରତ—ସର୍ଦ୍ଦାର ଶମ୍ଭୁଶଙ୍କ, ଆପଣ ସ୍ଥିର ମସ୍ତିଷ୍କରେ ବିଚାର କରନ୍ତୁ । ଆପଣଙ୍କର ପାଇକମାନଙ୍କୁ ମଧ୍ୟ ବୁଝାଇ ଦିଅନ୍ତୁ କେବଳ ଉତ୍ତେଜନାର ବଶବର୍ତ୍ତୀ ହୋଇ କୌଣସି କାର୍ଯ୍ୟ ସମାଧାନ ହୁଏନା ।

ଶମ୍ଭୁଶଙ୍କ—କ'ଣ ଆଉ ବୁଝାଇବି ସେନାପତି ? କୌଣସି କଥା ବୁଝିବି ଭଳି ବା ବୁଝାଇବା ଅବସ୍ଥାରେ ଆଜି ମୁଁ ନାହିଁ । ପାଇକକୁଳର କନ୍ୟାକୁ ଅପହରଣ କରି ଆପଣଙ୍କ ଶାହାଜାଦା ସେମାନଙ୍କ ମନରେ ଯେଉଁ ପ୍ରତିହିଂସାର ବହ୍ନି ଜାଳି ଦେଇଛନ୍ତି, ବିନା ରକ୍ତପାତ ବା ଧ୍ୱଂସ ଛଡ଼ା କ'ଣ ତାର ସମାଧାନ ହୋଇ ପାରିବ ?

ଜହରତ୍—ନିଶ୍ଚୟ ହୋଇ ପାରିବ । ଆପଣମାନେ ତ ଶାହାଜାଦାଙ୍କର ଶତ୍ରୁ ନୁହନ୍ତି । ଥରେ ମିତ୍ରତାର ହସ୍ତ ପ୍ରସାରଣ କରି ଦେଖନ୍ତୁ ।

ଶମ୍ଭୁଶଙ୍କ—ମିତ୍ରତା ? କାହା ସହିତ ? ବିଶ୍ୱସ୍ତ ବନ୍ଧୁ ସହିତ, ଯେ ବିଶ୍ୱାସଘାତକତା କରେ ତା ସହିତ ? ଜଣେ ନାରୀ ଅପହରଣକାରୀ ନୀଚ ଦସ୍ୟୁ ସହିତ ? ଗୋଟିଏ ମଦ୍ୟପ, ଲମ୍ପଟ, ବ୍ୟଭିଚାରୀ ସହିତ ?······

ଜହରତ୍—ସାବଧାନ ପାଇକ ସର୍ଦ୍ଦାର ! ଆପଣ ଭୁଲିଯାଉଛନ୍ତି ଯେ ନବାବ ଆଲିବର୍ଦ୍ଦିଖାଁଙ୍କର ସେନାପତି ସହିତ କଥାବାର୍ତ୍ତା

କରୁଛନ୍ତି ବୋଲି; ତାଙ୍କ ସମ୍ମୁଖରେ ଶାହାଜାଦାଙ୍କ ପ୍ରତି ଏ କଟୁ ଆକ୍ଷେପର ପରିଣତି କ'ଣ ହେବ ଜାଣ ?

ଶୁଭ—ଜାଣୁ ସେନାପତି, ଓଡ଼ିଶା ଛାଡ଼ିବା ମୁହୂର୍ତ୍ତରୁ ଆମେ ଶେଷ ନିଷ୍ପତ୍ତି ନିମନ୍ତେ ପ୍ରସ୍ତୁତ ହୋଇଛୁ । ପାଇକର ଜୀବନ ତା'ର ହାତମୁଠାରେ । ମରିବାକୁ ସେ ଭୟ କରେନା ।

ଶତ୍ରୁଶଲ୍ୟ—ସେନାପତି ସାହେବ ? ଆମ ନିଷ୍ପତ୍ତିର ଫଳାଫଳ ଜାଣିବାକୁ ବାହାରେ ହଜାର ହଜାର ପାଇକ ଆମ ଫେରିବା ବାଟକୁ ଚାହିଁ ରହିଛନ୍ତି । ସେମାନେ କେବଳ ସେମାନଙ୍କର କୁଳ କନ୍ୟାର ମର୍ଯ୍ୟାଦା ଲାଗି ପ୍ରାଣ ଉତ୍ସର୍ଗ କରି ଧାଇଁ ଆସିଛନ୍ତି ।

ଜହରତ—ସେ କଥା ମୁଁ ଜାଣେ ସର୍ଦ୍ଦାର ! ପାଇକମାନଙ୍କର ବୀରତ୍ୱ ଆମର ମୋଗଲ ବାହିନୀକୁ ଅଜଣା ନାହିଁ । ସେଇଥି-ପାଇଁ ତ ଆମେ ଆପଣଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ କରିଛୁଁ । ତେବେ ରାଜା ଲଲଟେନ୍ଦୁ ଯେତେବେଳେ ଶାହାଜାଦାଙ୍କ ସହିତ ଆଲୋଚନା କରିବାକୁ ମହଲ ଭିତରକୁ ଯାଇଛନ୍ତି ତାଙ୍କର ଫେରିବା ପୂର୍ବରୁ ଅଯଥା ଉତ୍ତେଜିତ ହେବା ଉଚିତ ନୁହେଁ ।

ସିରାଜ—(ପ୍ରବେଶି) କାହିଁ ? ମୋର ଭାଇଜାନ୍ ଲଲଟେନ୍ଦୁ କାହିଁ ? ସର୍ଦ୍ଦାର ଶତ୍ରୁଶଲ୍ୟ ଆପଣ ମଧ୍ୟ ଆସିଛନ୍ତି, ଭଲ ହୋଇଛି । ମୋର ସମସ୍ତ ପାଇକବନ୍ଧୁଙ୍କର ସାକ୍ଷାତ ପାଇ ମୁଁ ଆଜି ଆନନ୍ଦିତ ହେଲି । ଜହରତ, ମୋର ବନ୍ଧୁମାନଙ୍କର ପରିଚର୍ଯ୍ୟାରେ ଯେପରି କୌଣସି ତ୍ରୁଟି ନ ହୁଏ ।

ଶତ୍ରୁଶଲ୍ୟ—ବନ୍ଧୁ ? କିଏ କାହାର ବନ୍ଧୁ-ଶାହାଜାଦା ସିରାଜଉଦ୍ଦୌଲା ଓଡ଼ିଆ ପାଇକ ତା'ର ବନ୍ଧୁତା ରକ୍ଷାକରି ପ୍ରାଣ ବିସର୍ଜନ ଦେବାକୁ ଡରିନଥିଲେ ପଛଉ ଯିବ ନାହିଁ । ମାତ୍ର ଆପଣ

ଏହିପରି ଭାବେ ତା’ର ପ୍ରତିଦାନ ଦେଲେ । ବନ୍ଧୁ ବୋଲି ଛଳନା କରି ମୋର କନ୍ୟାକୁ ଅପହରଣ କରି ଆମର ପବିତ୍ର ବନ୍ଧୁତାରେ ତୀବ୍ର ହଳାହଳ ଢାଳିଦେଲେ ।

ସିରାଜ—ବୃଥା ଉତ୍ତେଜିତ ହୁଅନ୍ତୁ ନାହିଁ ବନ୍ଧୁ ! ହିନ୍ଦୁ, ମୁସଲମାନ ଦୁଇ ମହାଶକ୍ତିକୁ ନିବିଡ଼ ବନ୍ଧନରେ ବାନ୍ଧିବାକୁ ଯାଇ ସାହନସାହା ଆକବର ଥରେ ରାଜପୁତ କନ୍ୟାକୁ ବିବାହ କରିଥିଲେ । ଆଜି ଶାହାଜାଦା ସିରାଜ ଯଦି ପାଇକ ସର୍ଦ୍ଦାର ଶତ୍ରୁଶଲ୍ୟଙ୍କ କନ୍ୟାକୁ ବିବାହ କରେ ତେବେ ମୋଗଲ ଓ ପାଇକମାନଙ୍କର ବନ୍ଧୁତ୍ୱ ନିବିଡ଼ତର ହୋଇ ଉଠିବ । କ୍ଷତି କ’ଣ ?

ଶତ୍ରୁଶଲ୍ୟ—ଆପଣ ଜାଣନ୍ତି ନାହିଁ ଶାହାଜାଦା, ମୋର କନ୍ୟା ବାଗ୍‌ଦତ୍ତା ।

ସିରାଜ—ବାଗ୍‌ଦତ୍ତା······ ! ତନସ୍ମା ବାଗ୍‌ଦତ୍ତା ?··· ···

ଶତ୍ରୁଶଲ୍ୟ—ହଁ ଶାହାଜାଦା । ବାଲ୍ୟାବସ୍ଥାରୁ ଲକ୍ଷ୍ମଣଦେବ୍ ସହିତ ତା’ର ବିବାହ ସ୍ଥିର ହୋଇ ଯାଇଛି । ସେ ଦୁହେଁ ଦୁହିଁଙ୍କୁ ପ୍ରାଣ ଦେଇ ଭଲ ପାଆନ୍ତି ।

ସିରାଜ—ଲକ୍ଷ୍ମଣ ? ତନସ୍ମା ମୋର ଭାଇଜାନ୍ ଲକ୍ଷ୍ମଣଦେବ୍‌ର ବାଗଦତ୍ତା ?

ଶତ୍ରୁଶଲ୍ୟ—ହଁ ହଁ, ଆପଣ ଏ କ’ଣ କଲେ ଶାହାଜାଦା ? ଯେଉଁ ତାନି ମୋର ଆପଣଙ୍କୁ ମୃତ୍ୟୁମୁଖରୁ ବଞ୍ଚାଇଥିଲା ! ଆପଣଙ୍କର ଅଚେତନ ଅବସ୍ଥାରେ ସେବା କରି ଆପଣଙ୍କୁ ନବଜୀବନ ଦେଇଥିଲା ସେଇ ତାନିକୁ ଆପଣ ଦସ୍ୟୁ ପରି ଅପହରଣ କରିନେଲେ ?

ଶୁଭ—ଖାଲି ସେତିକି ନୁହେଁ । ଯେଉଁ ଲଲାଟ, ତା'ର ପ୍ରାଣମୂର୍ଚ୍ଛା' ସଂଗ୍ରାମ କରି ଜଗନ୍ନାଥ ଦୁର୍ଗ ରକ୍ଷା କରିଥିଲା ଆପଣଙ୍କୁ ବର୍ଗୀ ସେନାପତି ଭାସ୍କର ପଣ୍ଡିତ କବଳରୁ ରକ୍ଷା କରିଥିଲା, ବର୍ଗୀମାନଙ୍କୁ ଓଡ଼ିଶାରୁ ବହିଷ୍କାର କରିବାଲାଗି ମୋଗଲ ବାହିନୀକୁ ସାହାଯ୍ୟ କରିଥିଲା—ଆପଣଙ୍କର ସେଇ ଭାଇଜାନ ଲାଲଚାନ୍ଦକୁ ଆପଣ କ'ଣ ଏହି ପୁରସ୍କାର ଦେଲେ ?

ସିରାଜ—ଲାଲଚାନ୍ଦ କାହିଁ ? କାହିଁ ମୋର ଭାଇଜାନ ?

ଜହରତ—ଶାହାଜାଦା ! ରାଜାସାହେବ ଆପଣଙ୍କ ସହିତ ସାକ୍ଷାତ କରିବାକୁ ମହଲ ଭିତରକୁ ଯାଇଛନ୍ତି ।

ସିରାଜ—ମହଲ ଭିତରକୁ ? ବେଶ୍ ମୁଁ ବର୍ତ୍ତମାନ ଲାଲଚାନ୍ଦ ସହିତ ସାକ୍ଷାତ କରି ସବୁ ଭୁଲ ବୁଝାମଣା ସମାଧାନ କରିବି । ସର୍ଦ୍ଦାର ଶରଫୁଦ୍ଦିନ୍ ଆପଣମାନେ ଅପେକ୍ଷା କରନ୍ତୁ । (ପ୍ରସ୍ଥାନ)

( ଅନ୍ଧାର )

## ଦଶମ ଦୃଶ୍ୟ

[ ଚନସ୍ବାର ଶୟନ କକ୍ଷ-
ଉତ୍ତେଜିତ ଲଲଟେନ୍ଦୁ ଚନସ୍ବାକୁ
କହୁଛନ୍ତି ]

ଲଲଟ—ତୋ ମନରେ ଏ କଥା ଥିଲା, ତୁ ମତେ କହିଲୁ ନାହିଁ କାହିଁକି ? ମୋ ଜୀବନକୁ ନେଇ ଖେଳିବାରେ ତୋର କି ଲାଭ ହେଲା ?

ଚନସ୍ବା—ଲଲ ଭାଇ ! ଏ କଥା ତୁମେ କହୁଛ ।

ଲଲଟ—ହଁ, ମୁଁ କହୁଛି । କାରଣ ମୋ ଭଲ ପାଇବାରେ ଛଳନା ନାହିଁ । କିନ୍ତୁ, ତୁ—ତୁ ସ୍ବେ କ'ଣ କଲୁ । ଐଶ୍ୱର୍ଯ୍ୟ ପ୍ରତିପତ୍ତି ଲୋଭରେ ରାଜରାଣୀ ହେବାର ଆଶାନେଇ ମୋର ପବିତ୍ର ପ୍ରେମକୁ ଆଦରେ ଦଳି ଦେବାକୁ ଟିକେହେଲେ କୁଣ୍ଠାବୋଧ କଲୁ ନାହିଁ ?

ଚନସ୍ବା—ମୋ କଥା ଟିକେ ଶୁଣ ଲଲଭାଇ ! ମିଛରେ ମୋତେ ଦୋଷ ଦେବା ପୂର୍ବରୁ—

ଲଲଟ—ମିଛ ? ଶାହାଜାଦା ସିରାଜଉଦ୍ଦୌଲାଙ୍କ ସହିତ ଆଗରୁ ତୋର ପରିଚୟ ନ ଥିଲା ? ତୁମରି ଘରେ ତୋରି କୋଳରେ ମଥା ରଖି ତୁ ତାଙ୍କର ସେବା କରି ନ ଥିଲୁ ? ତୋର ଉଚ୍ଛଳ ଯୌବନ ସେ ଧନ ଶାହାଜାଦାକୁ କୋଳରେ ପାଇ ବଙ୍ଗ, ବିହାର, ଓଡ଼ିଶାର ରାଣୀ ବେଗମ୍ ହେବାର ସ୍ବପ୍ନରେ ଭାସି ଯାଇ ନ ଥିଲା ?

ଚନସ୍ମା—ବନ୍ଦକର ! ବନ୍ଦକର ଲଲ୍ଲଭାଇ ! ବନ୍ଦକର ତୁମେ, ତୁମେ ଏସବୁ କ'ଣ କହୁଯାଉଛ । ଜଣେ ମୁମୂର୍ଷୁର ସେବା କରି ମୁଁ କି ଅପରାଧ କରିଛି । ଯୋଉଥିପାଇଁ ତୁମେ ଆଜ ଏତେବଡ଼ ଦୋଷ ମୋ ମୁଣ୍ଡରେ ଲଦି ଦେଉଛ ।

ଲଲ୍ଲଠ—ସେ ସେବାର ଅନ୍ତରାଳରେ ଥିଲା, ତୋର ଆଜର ସ୍ୱପ୍ନକୁ ସାର୍ଥକ କରିବାର ଅଭିସନ୍ଧି । ତା ହୋଇ ନ ଥିଲେ ତୋର ଲଲ୍ଲଭାଇ ନିକଟରେ ଆଜପର୍ଯ୍ୟନ୍ତ କଥାଟାକୁ ଗୋପନ ରଖିଥାନ୍ତୁ । ମୋ ଆଗରେ ପ୍ରକାଶ କରିଥିଲେ ତ ମୁଁ ତୋତେ ନେଇ ଶାହାଜାଦାଙ୍କ ହାତରେ ସମର୍ପଣ କରି ଦେଇଥାନ୍ତି । ତୋର ସୁଖ ପାଇଁ ତୋ ଲଲ୍ଲଭାଇର କିଛି ଅଦେୟ ନ ଥିଲା ।

ଚନସ୍ମା—ଓଃ ଲଲ୍ଲଭାଇ ! ଏସବୁ କହିବା ଆଗରୁ ମୋ ଗଳା ଚିପି ମୋତେ ମାରିଦିଅ । ହେଲେ ମୋର ଏହି ଜଳନ୍ତା ଜୀବନରେ ଆଉ ଘିଅ ଢାଳ ନାହିଁ । ମୋତେ ଟିକିଏ ଶାନ୍ତିରେ ମରିବାକୁ ଦିଅ ।

ଲଲ୍ଲଠ—ତୁ କାହିଁକି ମରିବୁ ଚନସ୍ମା ! ତୋର ସ୍ୱପ୍ନକୁ ସଫଳ କରି ତୁ ବଞ୍ଚିରହ । ଲଲ୍ଲର ପ୍ରାଣଭରି ଭଲପାଇବାରେ ତୁ ବିଷ ଭରି ଦେଇଛୁ । ମରିବା ପାଳି ତ ତାର—

ଚନସ୍ମା—ଲଲ୍ଲଭାଇ ! ...... 

ଲଲ୍ଲଠ—ନା, ଆଜ ଆଉ ସେ ଲଲ୍ଲଭାଇ ଡାକିବାର ଅଧିକାର ତୋର ନାହିଁ । ଥିଲା ସେହିଦିନ, ଯେଉଁଦିନ ତାହାର କଥା ରଖି ଲଲ୍ଲଠେନ୍ଦ୍ର ନିହାଣ ଗୁଡ଼ ଧରିଥିଲା ତରବାରି, ସୃଷ୍ଟି ପରିବର୍ତ୍ତେ ଆରମ୍ଭ କରିଥିଲା ଧ୍ୱଂସ, ନିଜର ଜୀବନ ତୁଚ୍ଛ କରି ଦୁର୍ଦ୍ଧର୍ଷ ମରହଟ୍ଟା ବାହିନୀର ବ୍ୟୂହ ମଧ୍ୟରେ ଝାସ ଦେଇଥିଲା;

କିନ୍ତୁ ତାର ପ୍ରତିଦାନରେ ତାନିଠାରୁ ସେ ଆଜି ପାଇଛି କ'ଣ ? ପାଇଛି ପ୍ରତାରଣା, ଛଳନା, ବିଶ୍ୱାସଘାତକତା ! ······

ତନୟା—ଲଲିଭାଇ !

( ସିରାଜ ପ୍ରବେଶି ଶୁଣିଛନ୍ତି )

ଲଲିତ—ବେଶ୍ ତୁ ସୁଖରେ ରହ ତାନି । ତୋ ପାଇଁ ତୋ ଲଲିଭାଇ ସବୁକିଛି କରିପାରିଛି । ଆଜି ଆଜି ବି ତାନିର ସୁଖ ପାଇଁ ସେ ଚରମ ତ୍ୟାଗ କରିବ । ତାର ବାଗ୍‌ଦତ୍ତା' ପତ୍ନୀକୁ ସେ ତାର ବନ୍ଧୁ ହାତରେ ସମର୍ପଣ କରି ଫେରି ଯାଉଛି ।

ସିରାଜ—ଲଲିତ···ଭାଇଜାନ ! ! !

ଲଲିତ—କିଏ- ଶାହାଜାଦା ! ମୁଁ ଚାଲିଯାଉଛି ବନ୍ଧୁ । ତୁମର ଜୀବନ ସୁଖମୟ ହେଉ ।

( ପ୍ରସ୍ଥାନ )

ତନୟା—ଲଲିଭାଇ ! ତୁମେ ଫେରିଆସ ଲଲିଭାଇ—

ସିରାଜ—ତନୟା ! ତୁମେ ବ୍ୟସ୍ତ ହୁଅନା ତନୟା । ଅଜାଣତରେ ମୁଁ ଯେଉଁ ଭୁଲ କରିଛି ତାକୁ ସୁଧାରିବାର ଦାୟିତ୍ୱ ମୋର । ମୁଁ ଲଲିତେନ୍ଦୁକୁ ଫେରାଇ ଆଣିବି ।

ତନୟା—ସେ ଆଉ ଫେରିବେ ନାହିଁ ଶାହାଜାଦା ! ଆପଣ ତାଙ୍କୁ ଜାଣନ୍ତି ନାହିଁ । ସେ ଥରେ ଯାହା ନିଷ୍ପତ୍ତି କରନ୍ତି ସେଥିରୁ କେହି ତାଙ୍କୁ ଟଳେଇ ପାରିବେ ନାହିଁ ।

ସିରାଜ ନା, ନା, ସେ ମୋ କଥା ନିଶ୍ଚୟ ରଖିବ । ତାର ଭାଇଜାନର କଥାକୁ ସେ କେବେହେଲେ ଭାଙ୍ଗି ଦେଇ ପାରିବ

ନାହିଁ ବୋଲି ମୋର ବିଶ୍ୱାସ । ତୁମେ ଅପେକ୍ଷା କର । ମୁଁ ତାକୁ ଫେରାଇ ଆଣୁଛି ।

( ପ୍ରସ୍ଥାନ )

ଚନସ୍ମା— ଆଜି କାହାକୁ ଫେରାଇ ଆଣିବେ ଜାହାପନା । ଖ୍ରୀଷ୍ଟଙ୍କ ପ୍ରତିଜ୍ଞା କ'ଣ ଆପଣ ଭାଙ୍ଗି ପାରିବେ ? ସେ ଲିଲିଭାଇ ଆଉ ନାହାନ୍ତି । ତାଙ୍କ ପାଇଁ ତାନ ମରି ଯାଇଛି, ହଁ ହଁ ମୁଁ ମରି ଯାଇଛି, ମୁଁ ମରି ଯାଇଛି ।

( କବାଟ କିଳିଦେଲେ )

( ଅନ୍ଧାର )

## ଏକାଦଶ ଦୃଶ୍ୟ

[ ରାଜ ଅଳନ୍ଦ—ଉତ୍କଣ୍ଠାରେ
ଅପେକ୍ଷା କରୁଛନ୍ତି ଶୁଭଦେବ ]

ଲଳାଟ—( ପ୍ରବେଶି ) ଶୁଭ ଭାଇ ! ସର୍ଦ୍ଦାର କାହାନ୍ତି ?

ଶୁଭ— ତୁମର ବିଳମ୍ବ ଦେଖି ପାଇକମାନେ ଉତ୍ତେଜିତ ହୋଇ ପଡ଼ିଥିଲେ । ସେମାନଙ୍କୁ ବୁଝାଇବାଲାଗି ସର୍ଦ୍ଦାର ଯାଇଛନ୍ତି; କିନ୍ତୁ ତୁମେ ଏକା ଆସିଲ ଯେ, ତାନ ନାହିଁ ?

ଲଳାଟ— ତାନ ତାର ଠିକ୍ ଜାଗାରେ ଅଛି । ତା ପାଇଁ ଆମର ଆଉ ଚିନ୍ତା କରିବା ଦରକାର ନାହିଁ । ଚାଲ ଫେରିଯିବା ଚାଲ ।

ଶୁଭ—ଏସବୁ ତୁମେ କ'ଣ କହୁଛ ଲଳାଟେନ୍ଦୁ ? ତୁମର କ'ଣ ମୁଣ୍ଡ ଠିକ୍ ନାହିଁ ?

ଲଳାଟ—ମୋ ମୁଣ୍ଡ କାହିଁକି ! କାହାର ମୁଣ୍ଡ ଏଥିରେ ଠିକ୍ ରହିବ ଶୁଭ ଭାଇ । ଭୋଗ, ବିଳାସ, ଐଶ୍ୱର୍ଯ୍ୟ ମୋହରେ ମଣିଷ ଯେ ଏତେ ଅକୃତଜ୍ଞ ହୋଇପାରେ ଅତି ଆପଣାର ଲୋକ ସହିତ ଏତେଦୂର ବିଶ୍ୱାସଘାତକତା କରିପାରେ; ସେ କଥା ···

ଶୁଭ—ଏ ସବୁ ଆକ୍ଷେପ ତୁମର କାହା ପ୍ରତି ଲଳାଟେନ୍ଦୁ । ତାନ ପ୍ରତି ?

ଲଳାଟ—ହଁ ଶୁଭ ଭାଇ । ଯେଉଁ କୁଳ କନ୍ୟାର ମର୍ଯ୍ୟାଦା ରକ୍ଷା କରିବା ପାଇଁ ଆମେ ସମସ୍ତେ ଧାଇଁ ଆସିଥିଲେ ସେହି କୁଳ କନ୍ୟା ତାନ ଯେ ପାଇକକୁଳର କଳଙ୍କ ହେବ ଏ କଥା କିଏ ଆଶା କରିଥିଲା !

ଶୁଭ—ଲଲାଟ ! ତନୟା ପାଇକକୁଳର କଳଙ୍କ ? ଏ କଥା ତୁମେ କହି ପାରୁଚ ? ତୁମେ ଘାଇବଣିଆ ହୋଇଗଲ ପରେ ଯେଉଁ ତନୟା ତୁମ ପାଇଁ ଦିନ ରାତି ଆଖିରୁ ଲୁହ ଢାଳି ତୁମରି ବାଟ ଚାହିଁ ବସିଥିଲା, ଯେଉଁ ତନୟା ଏତେ ବଡ ବିପଦରେ ପଡ଼ି ମଧ୍ୟ ତୋର ପରି ମୋ ସଙ୍ଗରେ ପଳାଇ ନ ଆସି କହିଥିଲା ତୁମେ ଯାଅ ଶୁଭ ଭାଇ, ଲଲଭାଇଙ୍କୁ କହିବ ତନୟାର ମନବଳ ତାଙ୍କୁ ଅଜଣା ନାହିଁ । ସେ ଯଦି ବଞ୍ଚିଥାଏ ସେଇ ତାଙ୍କ ହୋଇ ବଞ୍ଚିଥିବ ଯଦି ମରିଯାଏ ସେଇ ତାଙ୍କ ହୋଇ ମରିବ । ସେଇ ପିଲାଦିନର ସାଥିକୁ ତୁମେ କଳଙ୍କିନୀ ବୋଲି କହି ପାରିଲ ?

ଲଲାଟ—ମୋର ସେ ପିଲାଦିନର ତାନି ଆଜି ଆଉ ନାହିଁ । ତା ହୋଇ ନ ଥିଲେ ସିରାଜ ଉଦ୍ଦୌଲାଙ୍କ ସହିତ ତାର ବହୁଦିନର ପରିଚୟକୁ ସେ ମୋ ପାଖରେ ଗୋପନ ରଖି ପାରିଥାନ୍ତା ? ତୁମ ସହିତ ପଳେଇ ଆସିବାର ସୁଯୋଗ ପାଇ ମଧ୍ୟ ବେଗମ୍ ମହଲ ମୋହରେ ସେଠି ପଡ଼ି ରହିଥାନ୍ତା ? ସବୁ ଛଳନା ଶୁଭ ଭାଇ ! ତାନିର ଅସଲ ରୂପଟା ମୁଁ ଦେଖି ପାରିଛି ।

ଶୁଭ—ନା, ତୁମେ ଯାହା ସବୁ ଶୁଣିଛ ବା ଦେଖିଛ ସବୁ ଭୁଲ୍ । ଅବସ୍ଥାଚକ୍ରରେ ପଡ଼ି ମୁମୂର୍ଷୁ ସିରାଜଙ୍କ ସହିତ ତାର ଦେଖା ହୋଇଥିଲା । ମାତୃଜାତିର ସହଜାତ ମମତା ଯୋଗୁ ସେଦିନ ସେ ତାଙ୍କ ଦ୍ୱାରସ୍ଥ ଏକ ସଂଜ୍ଞାହୀନ ଅତିଥିର ସେବା କରିଥିଲା, ସେଇଟା କଣ ତାର ଅପରାଧ ? ସେ କଥା ତୁମକୁ କହିବାର ସୁଯୋଗ ସେ କ'ଣ ପାଇଛି । ତୁମେ ସେତେବେଳେ ଜଗନ୍ନାଥ ଦୁର୍ଗରେ ଯୁଦ୍ଧରେ ବ୍ୟସ୍ତ ।

ଲଲାଟ—କିନ୍ତୁ ତା ପରେ ସେ ତ ମୋତେ କହି ପାରିଥାନ୍ତା ।

ଶୁଭ—ସେ ସୁଯୋଗ ତୁମେ ତାକୁ କ'ଣ ଦେଇଛ ? ବର୍ଗୀମାନଙ୍କୁ ଓଡ଼ିଶାର ସୀମା ପାର କରିବା ପରେ ତୁମେ ତ ରାଇବଣିଆର ରାଜା ହୋଇ ଗଲଗଲ । ସେତେବେଳେ ତୁମ ସହିତ କଥା ହେବାପାଇଁ ସୁଯୋଗ ସେ ପାଇଛୁ ?

ଲଲାଟ—ଶୁଭ ଭାଇ !

ଶୁଭ—ତୁମଠାରୁ ଏହା ଆମେ ଆଶା କରି ନ ଥିଲୁ ଲଲାଟେନ୍ଦୁ । ଏଥିପାଇଁ କ'ଣ ତୁମକୁ ଆଗୁଆ କରି ମହଲ ଭିତରକୁ ପଠାଇଥିଲୁ ? ପାଇକମାନଙ୍କୁ ଭକ୍ତକଠାରୁ ମୁର୍ଶିଦାବାଦ ପର୍ଯ୍ୟନ୍ତ ଆଗେଇଆଣି ହଠାତ୍ ତୁମର ଏ ପରିବର୍ତ୍ତନ ସେମାନେ କ'ଣ ଗ୍ରହଣ କରିପାରିବେ ? ଏ ବିଷୟରେ ସର୍ଦ୍ଦାରଙ୍କ ସହିତ ପରାମର୍ଶ ଏକାନ୍ତ ଆବଶ୍ୟକ । (ଚାଲିଗଲେ)

( ଲଲାଟ ଚିନ୍ତାମଗ୍ନ )

ସିରାଜ—(ପ୍ରବେଶି) ଲଲାଟ ! ଭାଇଜାନ୍ ! ଆସ ଭାଇ, ମୋର ବକ୍ଷରେ ବନ୍ଧୁତାର ସ୍ପର୍ଶ ଦେଇ ମୋତେ ଧନ୍ୟ କର ।

ଲଲାଟ—ବନ୍ଧୁତାର ସ୍ପର୍ଶ ନୁହେଁ । ତୁମ ବକ୍ଷରେ ଶାଣିତ ତରବାରିର ସ୍ପର୍ଶ ଦେବାକୁ ମୁଁ ଆସିଥିଲି । ତୁମଭଳି ବନ୍ଧୁ-ଦ୍ରୋହୀ, ନାରୀ ଅପହରଣକାରୀର ତାହାହିଁ ଉପଯୁକ୍ତ ପୁରସ୍କାର ।

ସିରାଜ୍—ବେଶ୍, ତାହାହିଁ ଦିଅ । କିନ୍ତୁ ବନ୍ଧୁଦ୍ରୋହୀ ବୋଲି କହି ମୋତେ ଆଉ ଆଘାତ କର ନାହିଁ । ଏ ପର୍ଯ୍ୟନ୍ତ ଯାହାସବୁ ଘଟି ଯାଇଛି, ସେଥିପାଇଁ କେହି ଦାୟୀ ନୁହଁନ୍ତି । ସବୁ ଭାଗ୍ୟର ବିଡ଼ମ୍ବନା ।

ଲଲାଟ—ଭାଗ୍ୟ ନୁହେଁ ଶାହାଜାଦା । ଏଥିପାଇଁ ସମ୍ପୂର୍ଣ୍ଣ ଦାୟୀ ତନଯା ; ସେ ଆପଣଙ୍କୁ ତା ହାତରେ ପାଇ ଐଶ୍ୱର୍ଯ୍ୟର ମୋହରେ

ଭୁଲି ଯାଇଛୁ । ଭାବୀ ନବାବଙ୍କର ବେଗମ୍ ହେବାର ଆଶାରେ ତାର ଅତୁଳନୀୟ ରୂପ ଓ ସୌନ୍ଦର୍ଯ୍ୟକୁ ଆପଣଙ୍କ ଆଗରେ ତୋଳିଧରି ଆପଣଙ୍କୁ ପ୍ରଲୁବ୍ଧ କରିଛୁ ।

ସିରାଜ—ଭୁଲ୍ ! ତୁମର ଏ ସମସ୍ତ ଧାରଣା ଭୁଲ୍ । ସେତେବେଳେ ମୁଁ ତନୟାକୁ ମୋର ନିଜର ପରିଚୟ ଦେଇ ନ ଥିଲି । ମୁଁ ସିରାଜର ସେନାପତି ବିଜୟ ମଲ୍ଲ ବୋଲି ଜାଣି ସେ ମୋର ସେବା କରିଥିଲା । କେବଳ ସେତିକି ନୁହେଁ, ସିରାଜର ନାମ ସ୍ମରଣ ମାତ୍ରେ ସେ ମୋତେ ଘୃଣାରେ କଟୂ ଆକ୍ଷେପ କରିବାକୁ ମଧ୍ୟ ପଛେଇ ନ ଥିଲା । ମୁଁ ଯଦି ସେତେବେଳେ ଜାଣିଥାନ୍ତି ଯେ ତନୟା ମୋର ଭାଇଜାନ୍ ଲଳିତେନ୍ଦୁର ବାଗ୍‌ଦତ୍ତା, ତେବେ ଏତେବଡ଼ ଭୁଲ୍ ମୁଁ କଦାପି କରିନଥାନ୍ତି ।

ଲଳିତ—ଶାହାଜାଦା, ଆପଣ ସତ କହୁଛନ୍ତି । ତନୟା ଆପଣଙ୍କର ପ୍ରକୃତ ପରିଚୟ ପାଇ ନ ଥିଲା । ମୁଁ ତେବେ କ'ଣ···

ସିରାଜ—ତୁମେ ତାକୁ ଭୁଲ ବୁଝିଛ । ତନୟା ଶୁଦ୍ଧ ସୁବର୍ଣ୍ଣ ସମ ପବିତ୍ର । ପାଇକ କୁଳର ନିଷ୍କଳଙ୍କ ଉଜ୍ଜ୍ୱଳ ରତ୍ନ ସେ । ମୋର ବେଗମ୍ ମହଲରେ ସେ ଥାଇ ସୁଦ୍ଧା ସମସ୍ତ ଐଶ୍ୱର୍ଯ୍ୟ ଆଉ ପ୍ରଲୋଭନକୁ ସେ ପାଦରେ ଆଡ଼େଇ ଦେଇଛି । ବହୁଭାବରେ ମୁଁ ତାକୁ ପ୍ରଲୋଭିତ କରି, ଯନ୍ତ୍ରଣା ଦେଇ, ନାନାପ୍ରକାର ଚେଷ୍ଟା କରି ପରୀକ୍ଷା କରିଛି । ତଥାପି ତୁମପ୍ରତି ତା'ର ଏକନିଷ୍ଠ ଧ୍ୟାନକୁ ମୁଁ ଭାଙ୍ଗି ପାରିନାହିଁ । ଆସ ଭାଇ ତନୟାକୁ ତୁମ ହାତରେ ସମର୍ପଣ କରି ମୁଁ ମୋର ଭୁଲର ପ୍ରାୟଶ୍ଚିତ୍ତ କରେ ।

ଲଲ୍ଟ—ମୋତେ କ୍ଷମା କରିବେ ଶାହାଜାଦା, କେବଳ ଗୋଟାଏ ଭୁଲର ବଶବର୍ତ୍ତୀ ହୋଇ ମୁଁ ଏତେ ବାଟ ଆଗେଇ ଯାଇ-ଥିଲି । ମୁଁ ମୋର ତାଜକୁ ଭୁଲ୍ ବୁଝିଥିଲି ।

( ହଠାତ୍ ମହଲ ଭିତର ନିଆଁ ଜଳିବା ଦେଖାଗଲା ଓ ଚିତ୍କାର ଶୁଣାଗଲା । )

ସିରାଜ—ନିଆଁ··· ନିଆଁ···ରଙ୍ଗମହଲ୍ ଭିତରେ ନିଆଁ ।

ଲଲ୍ଟ—ମୋର ତାଜ ଯେ ତା'ରି ଭିତରେ ଶାହାଜାଦା !

ସିରାଜ—ଆସ ଲଲ୍ଟ । ସେ ଯେଉଁଭଳି ଜିଦ୍‌ଖିଅ ତୁମର ଆଘାତ ସହି ନ ପାରି ହୁଏତ କ କାଣ୍ଡ କରି ବସିଛି ।

( ଦ୍ରୁତ ପ୍ରସ୍ଥାନ )

( ଅନ୍ଧାର )

## ଦ୍ୱାଦଶ ଦୃଶ୍ୟ

[ ଚାନ୍ଦର ଶୟନ କକ୍ଷ—ଚାନ୍ଦର ଝରକା ପାଖେ ବହୁ ଲୋକର ସମାଗମ । ଚନ୍ଦ୍ରୟା ଖଟ ବାଡ଼କୁ ଧରି ଠିଆ ହୋଇଛି—ତାର ସର୍ବାଙ୍ଗ ଜଳୁଛି । ଚାନ୍ଦ ଚାନ୍ଦ ଡାକ ଆସିଲେ ଲଲାଟ-ସିରାଜ ଝରକା ଭାଙ୍ଗି ପ୍ରବେଶ କଲେ ]

ଲଲାଟ—ଚାନ୍ଦ ! ଚାନ୍ଦ ତୁମ୍ଭେ କଣ କଲ ଚାନ୍ଦ । କବାଟ ଖୋଲ ଚାନ୍ଦ, କବାଟ ଖୋଲ ।

ସିରାଜ—ରହମତ୍ । ଶୀଘ୍ର ପାଣି ଆଣ । ଦୁଆର ଭାଙ୍ଗିଦଅ । ଚନ୍ଦ୍ରୟା ଚନ୍ଦ୍ରୟା— ।

ଲଲାଟ—ଚାନ୍ଦ ! କବାଟ ଖୋଲି ଦେ ! କବାଟ ଖୋଲି ଦେ ଚାନ୍ଦ। (କବାଟ ଭାଙ୍ଗିଦେଇ ପଶିଛି) ଚାନ୍ଦ ।

ଚନ୍ଦ୍ରୟା—ଲଲ୍ଲଭାଇ ! ତୁମେ ଫେରି ଆସିଚ ଲଲ୍ଲଭାଇ ।

ସିରାଜ / ଲଲାଟ } ( ଚାନ୍ଦ ପଡ଼ିଯିବା ଦେଖି ଚିତ୍କାର କରି ଉଠିଲେ)

ଚାନ୍ଦ ! ଚନ୍ଦ୍ରୟା !

ଲଲାଟ—ଏତେ ତୁ କ'ଣ କଲୁ ଚାନ୍ଦ । ମୋର ଭୁଲ ହୋଇଛି । ତୁ ମୋତେ କ୍ଷମା କର ଚାନ୍ଦ । ସବୁ ଦୋଷ ମୋର ।

ଚନ୍ଦ୍ରୟା—ନା ଲଲ୍ଲଭାଇ ! ତୁମର କିଛି ଦୋଷ ନାହିଁ । ସବୁ ଦୋଷ ମୋର-ମୋ ରୂପର ।

ସିରାଜ—ତନୟା !

ତନୟା—ସେହି ରୂପଟାକୁ ପୋଡ଼ି ପାଉଁଶ କରିଦେଲି ଲଲଭାଇ ! ଏଣିକି ତାକୁ ଚିରଦିନ ତୁମରି ହୋଇ ରହିବ ।

ସିରାଜ—ତନୟା ! ତୁମେ ଅଭିମାନରେ ତୁମର ସର୍ବନାଶ କରିଦେଲି !

ତନୟା—ଶାହାଜାଦା ! ବେଗମ୍ ହେବାର ବା ରାଣୀ ହେବାର ଲୋଭ ମୋର କେବେ ନଥିଲା । ସତ କହୁଛି ଲଲଭାଇ । ମତେ ତୁମେ ବିଶ୍ୱାସ କର । ମୁଁ ଖାଲି ଚାହିଁଥିଲି ତୁମକୁ । ତୁମେ ମତେ କୁହ ଲଲଭାଇ ? ତୁମେ ମତେ ଭୁଲି ଯିବ ନାହିଁ ତ ?

ଲଲିତ—ତାନ ! !                    ( କାନ୍ଦି ଉଠିଛି )

ତନୟା—ଲଲଭାଇ ! ମୋର ବଡ଼ ଆଶା ଥିଲା, ତୁମ ହାତରୁ ଟୋପାଏ ସିନ୍ଦୁର ପିନ୍ଧିବାକୁ । ଏହି ଶେଷ ସମୟରେ ମତେ ତୁମେ ସେତିକି ଦେବ ନାହିଁ ଲଲଭାଇ ?

ଲଲିତ—(ନିଜ ମୁଣ୍ଡରୁ ଝରୁଥିବା ରକ୍ତ ପୋଛି) ଏହି ନେ ତାନ । ତୋ ଲଲଭାଇର ତୋତେ ଅଦେୟ ତ କିଛି ନାହିଁ । ତୋ କଥା ରଖି ସେ ଜୀବନରେ ସବୁକିଛି କରିଛି । ଆଜି ତାର ନିଜ ରକ୍ତରେ ସେ ତୋର ଶେଷ ଇଚ୍ଛା ପୂରଣ କରିବ ।

( ତନୟା ମୁଣ୍ଡରେ ଟୋପାଦେଲା )

ତନୟା—ଲଲଭାଇ ! ଲଲଭାଇ !

( ଲଲିତ ମୁହଁକୁ ଆଉଁସି ଦେଉଛି ହଠାତ୍ ହାତ ମୁଠା ସବୁ ଶିଥିଳ ହୋଇଗଲା । ତା ପରେ ମରି-ଯାଇଛି ଲଲିତ କୋଳରେ । )

ଲଲାଟ—( ଚିତ୍କାର କରିଉଠିଛି ) ଚାନ୍ଦ !......

ସିରାଜ—ଚନ୍ଦ୍ରା ମୋ ଉପରେ ତୁମେ ଏଭଳି ପ୍ରତିଶୋଧ ନେଲ ! ଅଭିମାନ କରି ସିରାଜ ଜୀବନରେ ତୁମେ ଯେଉଁ କଳଙ୍କର କାଳିମା ବୋଳି ଦେଇଗଲ ଯୁଗ ଯୁଗ ଧରି ତାହା ରହି ଇତିହାସରେ ଲିପିବଦ୍ଧ ହୋଇ ରହିବ । ସମସ୍ତେ କହିବେ ସିରାଜ ଥିଲା ଲମ୍ପଟ, କାମୁକ, ନିଷ୍ଠୁର ।

ଲଲାଟ—( ଚାନ୍ଦର ମୃତ ଶରୀରକୁ ଧରି ) ନା ନା ଚାନ୍ଦ ତୁ ମୋତେ ଛାଡ଼ି ଯାଇ ପାରିବୁ ନାହିଁ ? ତୁ ଚିରଦିନ ମୋର ହୋଇ ରହିବୁ । ଭୁଲି ଆମର ଭୁଲିଯିବା ସେହି ପିଲାଦିନର ଖେଳଭୂଇଁକୁ ଯେଉଁଠି ତୋ ଲଲାଟ ବସି ଗଢ଼ୁଥିଲା ତୋର ମୂର୍ତ୍ତି । ଆଜ ମୁଁ ସେମିତି ତୋର ମୂର୍ତ୍ତି ଗଢ଼ିବି ଚାନ୍ଦ ! ସେଇଠି ହେବ ଆମର ଏଇ ଅପୂର୍ଣ୍ଣ ପ୍ରେମର ସମାପ୍ତି । )

( ଚନ୍ଦ୍ରାକୁ ଧରି ଉଠିଯିବା ବେଳେ ଦୂରରୁ ଭାସିଆସିଲା ଚନ୍ଦ୍ରା କଣ୍ଠର ଗୀତ )

**( ଅନ୍ଧାର )**

## ଶେଷ ଦୃଶ୍ୟ

[ ପ୍ରଥମ ଦୃଶ୍ୟର ସାଜ ସଜ୍ଜା,
ବହୁ ବନଧର ମୂର୍ତ୍ତି ଗଢ଼ି-
ଚାଲିଛି ଲଲାଟେନ୍ଦୁ, କଙ୍କାଳ-
ସାର ବଦନରେ ତାର ଅବଶ
ହାତରେ ନହାଣ, ମୁଗୁର
ଧରି ଠକ୍ ଠକ୍ କରି ମୂର୍ତ୍ତି
ଗଢ଼ୁଛି । ପୂର୍ବବତ୍ ସଙ୍ଗୀତ
ଭାସି ଆସିଛି । ଇତିମଧ୍ୟରେ
ଶୁଣାଗଲା ଯଜ୍ଞାନ୍ଦ୍ରଙ୍କ ସ୍ୱର ]

ଯଜ୍ଞାନ୍ଦ୍—କାର୍ତ୍ତିକ ! ଏହି ହେଲା ସେମାନଙ୍କ ଅଭିଶପ୍ତ ଜୀବନର କରୁଣ କାହାଣୀ । ଶେଷ ନିଃଶ୍ୱାସ ଥିବାଯାଏ ଲଲାଟ ସେହିଭଳି ମୂର୍ତ୍ତି ଗଢ଼ି ଚାଲିଥାଏ । ହଠାତ୍ ନହାଣ ମୁଗୁର ଠକ୍ ଠକ୍ ଶବ୍ଦ ବନ୍ଦ ହୋଇଗଲା । ପାଷାଣ ତନସ୍ୱାର ବୁକୁ ଉପରେ ଢଳି ପଡ଼ିଲା ଶିଳ୍ପୀ ଲଲାଟେନ୍ଦୁର ନିର୍ଜୀବ ଶରୀର ।

( ଲଲାଟେନ୍ଦୁ ନହାଣ ମୁଗୁର
ଛାଡ଼ି ଢଳି ପଡ଼ୁଛି )

କାର୍ତ୍ତିକ—ଅଶେଷ ଧନ୍ୟବାଦ୍ ସାର୍ ! ଆଜ ଆପଣଙ୍କ ସାଙ୍ଗେ ଇତିହାସ ଗବେଷଣା କରିବାକୁ ଆସିବା ମୋର ସାର୍ଥକ ହୋଇଛି ।

ଯଜ୍ଞାନ୍ଦ୍ର—କେବଳ ଶିଳ୍ପୀ ଲଲାଟେନ୍ଦୁ ବା ପାଇକଝିଅ ତନସ୍ୱା ନୁହେଁ କାର୍ତ୍ତିକ, ଇତିହାସର ବହୁ ଗୌରବମୟ ଚରିତ୍ର ସେମାନଙ୍କ ଜୀବନର ଅପାସୋରା କାହାଣୀ ସବୁକୁ ଲୁଚାଇ ରଖିଛନ୍ତି ଏହି ମାଟି ତଳେ । ଇଏତ କେବଳ "ଇତିହାସର ଗୋଟିଏ ଛାଇ ।"

—ଯବନିକା—

# ଗୀତ

ପ୍ରସ୍ତାବନାରେ—

୧ । ଝୁରେ ମନ ଚକୋରୀ ମୁଁ ଝୁରେ
ଏବେ ବି ଝୁରୁଛି ବିରହ ବିଧୁର
ହଜିଲ ଦିନର ହସ ସୁରେ

୨ । **ପ୍ରଥମ ଅଙ୍କ—ଦଶମ ଦୃଶ୍ୟରେ**

ଆ ଆ ଆରେ ସାଥୀ ଆ
ପ୍ରଭାତ କଳିକା ପରି ମୋର କିବା ଆସେ ଯାଏ
ଏଇ ମୌସୁମୀ ଭରା ଯଉବନ
ଝରି ଝରି ଲାଗେ ଏ କି ଶିହରଣ ।
ଶିହରଣ ଲାଗେ ଝରି ଝରି ରେ—ଝରି ରେ···(ଘୋଷା)

ଏଇ ରାତି···ମଧୁମୟୀ···ସୋହାଗିନୀ
ଏଇ ଜହ୍ନ···ଚିତ୍ତଚୋର···ମାୟାବିନୀ
କାର ପ୍ରୀତିଲାଗି ମନ ଝୁରେ
ଏ କି ନିଶା ଆଜି ଅଙ୍ଗେ ଅଙ୍ଗେ ଲାଗେ ରେ—ଆ···(୧)

ସରାଗ ନୟନ ଭରି—ସପନର ଅଞ୍ଜନ,
ମନର ବାଉଳା ସୁରେ—ଜାଗେ କମ୍ପନ,
ଏଇ ରାତି ମଧୁ ଝରା ଦିଅ ସାଥୀ ପ୍ରୀତି ସୁରା ।
କାର ପ୍ରୀତି ଲାଗି ମନ ଝୁରେ
ଏ କି ନିଶା ଆଜି ଅଙ୍ଗେ ଅଙ୍ଗେ ଲାଗେ ରେ—ଆ···(୨)

## ଦ୍ୱିତୀୟ ଅଙ୍କ—ପ୍ରଥମ ଦୃଶ୍ୟରେ

ସଜନୀ ଦିବା ରଜନୀ          ମନୋହାରିଣୀ ଖୋଜେ—
ବିରହ ନଦୀର ପାରେ  ମନ କପୋତ ଗୁମୁରେ ମରେ ଭଜେ ରେ
(ଘୋଷା)

ତୁମେ ମଣ୍ଡନ ଶ୍ରୀଷାର କବିତା
ତୁମେ ମୋହିନୀ ରୂପର ବନିତା
ମୋର ମିଳନ ପିୟାସୀ—
ମନ ଭାବନା ବିଳାସୀ ସରିତା ।
ମଧୁ ପରଶ ପରଶରେ ମରମ ଶତ ସପନ ସରଜେ ।

## ଦ୍ୱିତୀୟ ଅଙ୍କ—ଦ୍ୱିତୀୟ ଦୃଶ୍ୟରେ

( ଗୀତ )

ଝୁରେ ମନ ଚକୋରୀ ମୁଁ ଝୁରେ
ତୁମେ କି ବୁଝିନା ମୋ ମନ ବେଦନା (ଘୋଷା)

ମୁଁ ଯେ କଣି କମଳିନୀ ସପନ ମୋ ଚନ୍ଦ୍ରମା
ଝିରୀ ସେଫାଳୀ ମୋ ସୁରେ ଆଜ
ଆହତର ମରୁ ମୂର୍ଚ୍ଛନା । ୧ ।

ଅକୁହା ଯେତେକ ମୋ ମନକଥା
ସବୁ ମୁଁ ଦେଇଛି କହି
ଏବେ ବି ଝୁରୁଛି ବିରହ ବିଧୁରା
ସପନର ମାଳକରିଁ
ତୁମ ସ୍ମୃତି ତଳେ ଜାଗେନା କି
କେବେ ମିଳନର ମଧୁ ମୂର୍ଚ୍ଛନା । ୨ ।

—✱—